# କାଠଯୋଡ଼ୀ ତୀରେ ସାୟଂକାଳ

( ୧ )

ଅତ ରମଣୀୟ କାଠଯୋଡ଼ୀ ତୀର,
ଧୀରେ ଧୀରେ ବହେ ଶୀତଳ ସମୀର ।

କଲ୍ଲୋଳମୀ ବହୁ ସଲିଳ ସମ୍ପଦେ,
ପୂଜିବାକୁ ଧାଏଁ ମହାର୍ଣ୍ଣବ ପଦେ ।

ସ୍ତରେ ସ୍ତରେ ଉଠି ଉନ୍ନତ ଲହରୀ,
ପକାଏ ଉଠାଏ ପ୍ରତିକ୍ଷଣେ ତରୀ ।

ପାରହେବା ଲୋକ ମନେ କରି ଭୟ
ଲଗାନ୍ତି ଆପଣା ଇଷ୍ଟଦେବେ ଲୟ ।

ସୁଦକ୍ଷ ନାବିକ ବୁଦ୍ଧି କଉଶଳେ,
ଚଳାଏ ତରଣୀ ନିଜ ବାହୁବଳେ ।

ସାହସେ ଆହୁଲା ମାରେ ଚରଚର;
ନାକ ପଢ଼ିବାକୁ ନାହିଁ ଅବସର ।

ସାମାନ୍ୟ ଏ ନଦୀ ଏପରି ଦୁର୍ଗମ,
ଭବ-ସିନ୍ଧୁ ଆହା ନୁହେଁ କି ବିଷମ

## କାଠଯୋଡ଼ୀ ଖରେ ସାୟଂକାଳ

ଏକା ଶ୍ରମ ଯତ୍ନେ କିଏ ହେବ ପାର,
ଦୁସ୍ତର ଅନନ୍ତ ଭବ-ପାରାବାର ?
ନୈତିକ ସାଧନର ତୋରଣ ସାହସୀ
କର୍ତ୍ତବ୍ୟ-ରୂପିଣୀ ତରୀ ପରେ ବସି,
ବିବେକ-ଆତ୍ମାର ଅବିରତେ ମାର,
ହେବ ଯେବେ ଭବ ମହାସିନ୍ଧୁ ପାର ।
ବ୍ରାହ୍ମଣ ଚଣ୍ଡାଳ ଧନେଶ ଭିଖାରି,
ଏକ ନାବେ ବସି ହେଉଛନ୍ତି ପାରି ।
ଏକାର କାହାର ମନେ ନାହିଁ ଲବେ,
ଧର୍ମନାବେ ସମ ଅଟନ୍ତି ସରବେ ।
ଧନ୍ୟ କାଠଯୋଡ଼ୀ ତ୍ରିପୁ ଶୈବଳିନୀ,
ଧନ୍ୟ ପୂତନୀର ତରଙ୍ଗମାଳିନୀ !
ଚୋର ବଡ଼ ଦସ୍ୟୁ ଅକିଞ୍ଚନ ଜନେ,
ଧର୍ମ୍ମଭାବ ତେଣୁ ଉପୁଜାଇ ମନେ ।

ଅସ୍ତାଚଳେ ଏବେ ପ୍ରବେଶ ତପନ,
ଲୋହିତ ରଞ୍ଜିତ ପ୍ରତୀଚୀ ଗଗନ ।
ଅସ୍ତମିତ ରବି ସ୍ୱର୍ଣ୍ଣପ୍ରୁ କର,
ପ୍ରତିବିମ୍ବି ମେଘେ ଦିଶେ କି ସୁନ୍ଦର !
କୃଷ୍ଣ ମେଘେ ପଡ଼ି କନକ କିରଣ,
ସୃଜନ୍ତି ଆହା କି ବିଚିତ୍ର ବରଣ !
ଏପରି ମହତ ଜନର ପ୍ରଭାବ,
ଜନ୍ମାଏ ଅପର ପ୍ରାଣେ ନିଜ ଭାବ ।

ମହତ ଜନର ଲାଗି ଅଂଗ ସ୍ପୃହା,
ଚେତ ହୁଅଇ କ୍ଷୁଦ୍ର ପ୍ରାଣିକାୟା ।
କ୍ଷଣମାତ୍ର ହେଲେ ସଜ୍ଜନ ସଙ୍ଗତି,
ଛୁଟେ ସିନା ସବେ ସଂସାର-ଦୁର୍ଗତି ।

ପାଣ୍ଡୁର ଶ୍ୟାମଳ ଜଳା ଧଳା ରଙ୍ଗେ,
କ୍ରମେ ନଭସ୍ଥଳ ଶୋଭିଲା କ ରଙ୍ଗେ ।
ଯେତେବେଳେ ଆସେ ଯେଉଁ ରୂପ ମନେ,
ଦିଶଇ ତକ୍ଷଣେ ସେ ଛବି ଗଗନେ ।
ପ୍ରତିଭାତ ହୋଇ ସେ ଛବି ସକଳ,
ସର୍ବତ ଅନ୍ତରେ ଶୋଭେ ଅବିକଳ ।
ଆବର ଶ୍ୟାମଳ ଶୈଳ ପ୍ରତିରୂପ,
ନଦୀଗର୍ଭେ ଦିଶେ ଯଥା ତମ-ସ୍ତୂପ !
ମହତ ଜନର ହୃଦେ ଏହି ମତି,
ଆଭାସେ ସତତ ଶତ ପ୍ରତିକୃତି ।
ପ୍ରେମ-ଭାବେ ଯାର ଅନ୍ତର ପୂରିତ,
ସର୍ବ ପ୍ରାଣୀ-ହୃଦ ତା ହୃଦେ ଅଙ୍କିତ ।
ସର୍ବ-ଅନୁଭୂତି ସର୍ବଭୂତେ ତାର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।
ସେହି ନଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି,
ଅନ୍ୟ ହୋଇ ତାର ନାହିଁ ଆଉ କେହି ।
ଧନ୍ୟ ପ୍ରେମମୟୀ, ତ୍ରିପୁ କଲ୍ଲୋଳିନୀ
ଶତ ଶତ ପ୍ରାଣୀ ଆହ୍ଲାଦ-ଦାୟିନୀ ।

## କାଠଯୋଡ଼ୀ କୂଳର ସାୟଂକାଳ

ଧନ୍ୟ ଧନ୍ୟ ତୋର ପବିତ୍ର ଜୀବନ,
ଦେଖାଏ ମହାତ୍ମା-ହୃଦ-ନିଦର୍ଶନ ।

ଯୁହୁଁ ଯୁହୁଁ ଏବେ ବୁଡ଼ିଗଲେ ରବି,
ତିରୋହିତ ହେଲ କ୍ରମେ ସବୁ ଛବି ।

କ୍ଷଣ ମଧ୍ୟେ ସେହି ସୁଦୃଶ୍ୟ ନିଚୟ,
ଅନ୍ଧକାର-ଗର୍ଭେ ଭଜିଲେ ବିଳୟ ।

ଘୋର ତମେ ମତେ ଛାଡ଼ିଦେଇ ଏକା,
ଚାଲିଗଲେ ଆଉ ଦେଲେ ନାହିଁ ଦେଖା ।

ଏହିପରି ସବୁ ସନ୍ଧ୍ୟା-ବେଳର,
ଘୋର ଅନ୍ଧକାରେ ଆସେ ଆଠଣାଉ ।

ନୁହେଁ କେବେ ଥିର ପ୍ରିୟ ବସ୍ତୁଚୟ,
ସଖା ମାତ୍ର ଏକା ଶ୍ରୀହରି ଶରଣ ।



# କାଠଯୋଡ଼ୀ ତୀରେ ସାୟଂକାଳ

( ୧ )

ପଶ୍ଚିମ ଗଗନ କୋଳରେ    ଉପଗତ ତରଣୀ,
ଖର ଖରତାପୁଁ ମୁକତ    ଏବେ ହେଲା ଧରଣୀ ।

ମୃଦୁଳେ ସୁଗନ୍ଧ ପବନେ    କରେ ପ୍ରଦୋଷ ଖେଳା,
ମଧୁକାଳେ ଏହା ମଧୁର    ସନ୍ଧ୍ୟା-ବିହାର ବେଳା ।

କ୍ଷୀଣ-ଅଙ୍ଗୀ କାଠଯୋଡ଼ୀର    ମନୋହର ପୁଲିନେ
ପରମ ଉଲ୍ଲାସ ଅନ୍ତରେ    ଏବେ ଭ୍ରମିଲି ବନେ ।

ଅଦୂରେ ଶ୍ୟାମଳ ଶଇଳ    ଆହା କି ଶୋଭାବନ୍ତ !
ପ୍ରକୃତିଦେବୀ କି କରିଛି    ନଷ୍ଟ ଗୁଚ୍ଛ-ସୀମନ୍ତ !

ସୀମନ୍ତ ମଧ୍ୟରେ ସିନ୍ଦୂର-    ବିନ୍ଦୁ ସମ ବର୍ତ୍ତୁଳ
ଅସ୍ତମିତ ରବିମଣ୍ଡଳ    ଦିଶେ କେଡେ ମଞ୍ଜୁଳ ।

ନିଶି ଆଗମନେ ରସିକା-    ରୂପବତୀ ପରାୟେ,
ଦିବ୍ୟ ବେଶ ସାଜ ତଟିନୀ    ସିନ୍ଧୁ ସଙ୍ଗମେ ଯାଏ ।

କ୍ରମେ ଗୁଳିଗଲା ଏ ଛବି,    ରବି ହୋଇଲେ ଲୀନ,
ଆଗତ ପ୍ରଦୋଷ ସମୟ,    ଶେଷ ହୋଇଲା ଦିନ ।

## କାଠଯୋଡ଼ୀ ତୀରେ ସାୟଂକାଳ

ପାଣ୍ଡୁର ବରଣେ ରଞ୍ଜିତ ହୋଇଅଛି ଗଗନ,
କି ଅବା ଏପରି ଦିଶଇ ମୃତ-ଦେହ ବଦନ ।
ତପବାଳ ମୁକ୍ତ କ୍ଷଣକ ଅଳ୍ପେ ହୋଇ ବାହାର,
ଧୂସରିତ କୃଷ୍ଣବରଣ କଲା ସବୁ ସଂହାର ।
ଘଟୁଅଛି ନିତ୍ୟ ଏପରି ଭବେ ଘଟନାଚୟ,
ଆଖି ବୁଜିଦେଲେ ସକଳ ବିଶ୍ୱ ଅନ୍ଧାରମୟ ।

କ୍ରମେ କ୍ରମେ ଏବେ ହୋଇଲା ଆସି ମୂର୍ତ୍ତ ଅନ୍ଧାର,
କଳନାଦ ରତ ସଧୀରେ ବହେ ତଟିନୀ-ବାରି ।
ମୃଦୁ ଊର୍ମିପୁଞ୍ଜ ମଞ୍ଜୁଳ ଦିଶୁଥିଲା କି ରଙ୍ଗେ,
ବାରି ଲୁହେ ଏବେ ଯିବାକୁ ମିଶି ତିମିର ଅଙ୍ଗେ ।
ଏହି ଦଶା ଦିନେ ଲଭିବ ଖିଳ ବିଶ୍ୱମଣ୍ଡଳ,
ସର୍ବଗ୍ରାସୀ କାଳ-ଅନ୍ଧାରେ ମଜ୍ଜିଯିବ ସକଳ ।
ଧନ୍ୟ କାଠଯୋଡ଼ୀ ! ତୋ ତୀରେ ନିତ୍ୟ ଏପରି ଦୃଶ୍ୟ,
ଦେଖି କେଉଁ ମୂଢ଼ ମାନସ ନ ହୁଅଇ ଉଦାସ
ଏହିପରି ନିତ୍ୟ ବିଲୋକି ନବ ଛବି ସକଳ,
କଠିନ ନାସ୍ତିକ ହୃଦୟ ପ୍ରେମେ ହୁଏ ତରଳ ।

ତୋର ପ୍ରାଣପଣ ସାଗର — ତୀରେ ଅନେକ ବାର,
ପ୍ରଦୋଷ ସମୟେ ଆନନ୍ଦେ କରିଅଛି ବିହାର ।
ଏତେ ନବ ଛବି କଦାପି ଦେଖି ନଥିଲି ଥରେ,
ମୈତ୍ରୀର ଔଦାର୍ଯ୍ୟ ପ୍ରକାଶେ ତର୍ଜି ସଦା ଅନ୍ତରେ ।

ବିଶ୍ୱପତିଙ୍କର ଅନନ୍ତ          ଶକ୍ତି ହୃଦେ ପ୍ରକଟେ,
ପରିସ୍ଫୁଟ ହୁଏ ସେ ଭାବ          ଦୃଷ୍ଟି ଗଗନ-ପଟେ ।

ନିତି ନିତି ଦେଖି ତୋ ତୀରେ          ଛବି ଛବି ପଟଳ
ଜାଣିଲି ସ୍ୱଭାବେ କାମିନୀ—          ହୃଦ ଅତି ଚପଳ ।

ହେଉ ପଛେ ଯେତେ          ମାନିନୀ ଗୁଣବତୀ ଯୁବ(
ନବ ନବ ବେଶ ଭୂଷଣେ          ସଦା ବଳାଏ ମତି ।

ସୁଦୃଢ଼ ଗମ୍ଭୀର ନୁହଇ          ଯେଣୁ ନାରୀ-ହୃଦୟ;
ତେଣୁ ସିନା କରେ ଅଟନ୍ତ          ନାରୀ ଜାତି ଆଶ୍ରୟ ।

ସୁକୋମଳ କ୍ଷୀଣ ବଲ୍ଲରୀ          ଲଭି ପାଦପ ସଙ୍ଗ,
ଆହା କି ପରମ ମଞ୍ଜୁଳ          ଦିଶେ ଉଭୟ ଅଙ୍ଗ !

ତେବେ କିପାଁ ଏତେ ଯୁଝନ୍ତି          ସଭ୍ୟ ନାରୀ- ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ          ସମ ହେବାକୁ ଆଜ ।

ରହିବ ବେନିଙ୍କ ପ୍ରକୃତି          ମଧ୍ୟେ ନିଶ୍ଚେ ଭିନ୍ନତା,
କିଏ ସେ କରିବ ଅନ୍ୟଥା          ଯାହା କଲ୍ପିଛି ଧାତା ।

ପ୍ରିୟ କଲ୍ଲୋଳିନୀ ! ତୋ ତୀରେ          ଆଜି କଲି ଲୋକନ,
ପବିତ୍ର ସରଳ ଆଦର୍ଶ—          ନାରୀ ଶୁଦ୍ଧ-ଜୀବନ ।

ପତି ପାଦସେବା କରିବା          ପାଇଁ ହେ ସ୍ରୋତସ୍ୱତି !
ଅକ୍ଷୁଣ୍ଣ ମାନସେ ସତତ          କରୁ ଏକାନ୍ତେ ଗତି ।

ପରଶିବା ମାତ୍ରେ ତୋ ତନୁ          ସୁଶୀତଳ ସମୀର,
ଊର୍ମି ଛଳେ ନିଜ ଉପରେ          କମ୍ପି ଉଠେ ତୋ ନୀର

କୁଳକାମିନୀର ଏପରି          ସିନା ମହତ୍ତା ଖ୍ୟାତି,
ଲଜ୍ଜାବତୀ ହୋଇ ଏକାନ୍ତେ          କାନ୍ତେ ଆଚରେ ପ୍ରୀତି

ପ୍ରେମ ମଧୁରତା ସ୍ନେହାର୍ଦ୍ର          ସ୍ନିଗ୍ଧ ଭାବ ସକଳ,
ତୋ ସ୍ୱଚ୍ଛ ଜୀବନେ ଦେଖଇ          ଜ୍ଞାନୀ ନେତ୍ର କେବଳ ।

## କାଠଯୋଡ଼ୀ ଘଟରେ ସାୟଂକାଳ

ନବ ନବ ବେଶ ଭୂଷଣେ — ତୁ ଯେ ବଳାଉ ମନ
ଚପଳତା ସଙ୍ଗ ନୁହଇ — କଳୁ ତାହା ଦୂଷଣ ।

ଦୁର୍ବଳ ପ୍ରକୃତି ଏପରି — ଯେତେ ନାଶ ଘଟଣେ
ସଦ ବ୍ୟବହାରେ ବିମୁଖ — ନୁହେ ପ୍ରମୋଦ ତାନେ ।

ଉଚ୍ଛୃଙ୍ଖଳ ବୃତ୍ତି ସକଳ — ଯେବେ ସଂଯମ ଶିକାଣେ
ପୂର୍ଣ୍ଣ ହୁଏ ନର ସଂସାର — ପୂରେ ସ୍ୱର୍ଗ ଉଲ୍ଲାସେ ।



# କାଠଯୋଡ଼ା ତୀରେ ଚନ୍ଦ୍ରାଲୋକ ନିଶୀଥ

( ୩ )

ସୁଧାକର-କରଜାଲେ ବିଭୂଷିତା ମହୀ,
ଶାନ୍ତିକେଳି ପଦେ ଖଟେ ମନ୍ଦାନିଳ ବହି ।

ମାୟାବିନୀ-ନିଦ୍ରାବଳେ ଜଗତ ମୋହିତ,
ଆହା କି ସୁନ୍ଦର ବେଶେ ପ୍ରକୃତି ଶୋଭିତ !

ନାହିଁ ଏବେ ଦିବସର ଘୋର କଳନାଦ,
କ୍ଷୁଦ୍ର ଚେତା ମାନବର ଜାଗ୍ରତ ବିବାଦ ।

ନାହିଁ ଅଶାନ୍ତିରୂପିଣୀ ମାତ ନିଶାଚରୀ,
ସ୍ୱାର୍ଥପରତାର ଘୋର ଉଚ୍ଛ୍ୱାସ ଲହରୀ ।

ଆତ୍ମଭିମାନର ନାହିଁ ଗମ୍ଭୀର ଶବଦ,
ଏକାବେଳେ ସର୍ବ ବିଶ୍ୱମଣ୍ଡଳ ସ୍ତବଧ ।

ସଂସାର ଭୁମୁଳ ରଣ କ୍ଷଣେ ତିରୋହିତ,
ଗାଏ କି ସ୍ୱଚ୍ଛ ତେଣୁ ସୁଶାନ୍ତ ସଙ୍ଗୀତ ?

ଅବ୍ୟକ୍ତ ଅନିବାଧ ଅତି ସୁମଧୁର ତାନ;
କିବା ସେ ନିଗୂଢ ତତ୍ତ୍ୱ ସାମବେଦ ଗାନ ।

# କାଠଯୋଡ଼ୀ ତଟର ଚନ୍ଦ୍ରାଲୋକ ନିଶୀଥ

ଅସଂଖ୍ୟ ତାରକାପନ୍ତ ଗଗନମଣ୍ଡଳେ,
ଶୁଣନ୍ତି ସେ ମହାଗୀତ ନୀରବ ନିସ୍ତନେ ।

ମୂଢ ଜ୍ଞାନହୀନ ମୂର୍ଖ କିଛି ନ ବୁଝଇ,
ତେବେ ହେଲେ ମୋ ଅନ୍ତର ଉଲ୍ଲସି ଉଠଇ ।

ଦେଖି ଶାନ୍ତିମୟ ଦୃଶ୍ୟ ଶୁଣି ଏ ସୁସ୍ୱର,
ଅପୂର୍ବ ସ୍ୱର୍ଗୀୟ ସୁଖେ ପୂରେ ମୋ ଅନ୍ତର ।

ଜାଣିଲି ମାନବ-ହୃଦ ସଙ୍ଗେ ଆଦିକନ୍ଦ,
ସ୍ଥାପିଛନ୍ତି ପ୍ରକୃତିର ନିତନ ସମ୍ବନ୍ଧ ।

କିନ୍ତୁ ଦୁର୍ବୁଦ୍ଧି ନର ମୂଢ଼ ନିରନ୍ତର,
ସେ ସଂଯୋଗ ଛେଦିବାକୁ ବଡ଼ ତତପର ।

ନୀଚ ବୃତ୍ତି ସକଳର ହୁଏ ତେଣୁ ଦାସ,
ସୁନ୍ଦର ପ୍ରବୃତ୍ତିଚୟ ଲଭନ୍ତି ବିନାଶ ।

ଧନ୍ୟ ସେହି ଋଷିଗଣ ଆଦି ଆର୍ଯ୍ୟଦଳ,
ଗାଇଲେ ଯେ ଆଦି-ତତ୍ତ୍ୱ ସଙ୍ଗୀତ ସରଳ ।

ଜଡ଼ ବସ୍ତୁ ହୃଦେ ଯେବୁ କଲେ ବିଲୋକନ,
ମହାଶକ୍ତି ମହାତେଜଃ ଅନାଦି କାରଣ ।

ଜନମିଥା ସେ ଯୁଗେ ହେଲେ ମୁଁ ପାମର,
ସୁଖେ ସେବା କରିଥାନ୍ତି ପ୍ରକୃତି-ଈଶ୍ୱର ।

ବାହ୍ୟ ଆବରଣ ଫେଡ଼ି ପ୍ରକୃତି ଅଙ୍ଗରେ
ଦିବ୍ୟ ଜ୍ଞାନନେତ୍ରେ ହେଲେ ଦେଖିଥାନ୍ତି ଥରେ ।

ଅପ୍ରାକୃତ ପ୍ରେମ-ରୂପ ସତ୍ୟ ସନାତନ,
ଅନନ୍ତ ବାସନା ହୋଇଥାଆନ୍ତା ପୂରଣ ।

ଧନ୍ୟ କାଠଯୋଡ଼ି ! ଧନ୍ୟ ପ୍ରିୟ ଶୈବଳିନ !
ଛାପିତ ହୃଦେ ତୁ ଶାନ୍ତି-ସୁଧା-ସଞ୍ଚରଣୀ ।

ସଂସାରର ଲଜ୍ଜା ଘୃଣା-ପ୍ରବଞ୍ଚନା-ଜାଲେ
ପ୍ରପୀଡ଼ିତ ହୁଏ ମୋର ମାନସ ଯେକାଳେ,
ନିର୍ଝର ତୋ ଶାନ୍ତିର ଆସି କଲେ ବିତରଣ,
କି ମୋହନ ମନ୍ତ୍ରେ କରୁ ସକଳ ହରଣ ।
ଉଦଧ ସ୍ବର୍ଗୀୟ ଚିନ୍ତା ନାନା ପ୍ରିୟ ଭାବ,
କଳୁଷିତ ହୃଦେ ମୋର ଶୀଘ୍ର ଉଦ୍ଭବ ।
ତୋର ପଦଯୁଗେ ମୁହିଁ ଚିରକାଳ ଋଣୀ,
ଏହି ଭାବ ଥାଉ ନିତି ହେ ସୁରତରୁଣୀ !



# ଭାର୍ଗବୀ ପ୍ରତି

ତେଜ ଅଶାନ୍ତ ନଗର ପ୍ରାଣ
ସ୍ୱଚ୍ଛ ପଲ୍ଲି-ପଥେ କଲୁ ବାସ
ତୋର ବାଙ୍କ ଭୂମି          ହେଲୁ ପଥଶ୍ରମୀ
ଶେଷେ ପିଛ, ସଙ୍ଗେ ଗନ୍ଧ ହ୍ରାସ, ଲୋ ତଟିନି ! ୧ ।

କାହିଁ କୋମଳ ଶ୍ୟାମଳ ଘାସ
କାହିଁ ବୃକ୍ଷଙ୍କ କରନ୍ତ ବୃଷ
ତୋର ତେନେ ତଟେ          କାହିଁ ଅବା ସ୍ୱଟେ
ସୂର୍ଯ୍ୟ ବୋଲନ୍ତ ସରଳ ସ୍ୱପ, ଲୋ ତଟିନି ! ୨ ।

ପଲ୍ଲୀ ପ୍ରାକୃତ ସରଳ କାନ୍ତ
ଜଡ଼ବେଗହୀନ ହୃଦ୍ୟେ ଶାନ୍ତ
ତୋର ଜଳଧାର—          ଯୋଗେ ସୁଖତର
ହରେ ସହଜେ ସକଳ ଶ୍ରାନ୍ତ, ଲୋ ତଟିନି ! ୩ ।

ନାନାଜାତି ତରୁ ଗୁଳ୍ମ-ଲତା
ଫଳ-ଫୁଲ ପଲ୍ଲବେ ଆନତା
ଆବୋରି ତୋ ତୀରେ          ସ୍ୱଜେ ବେଳ ଶିରେ
ପଲ୍ଲୀ ପରେ କ ଟେକନ୍ତି ଛତ, ଲୋ ତଟିନି ! ୪

ଦେଇ ଆପଣାଶୁଦ୍ଧ ଜୀବନ
ତୋଷ କେତେ କେତେ ଜୀବଗଣ
ପର ହିତେ ଏକା          ନିରନ୍ତର ଢଳା
ଧନ୍ୟ ଧନ୍ୟ ତୋ ମହତପଣ, ଲୋ ତଟିନି ! ୫ ।

ବର୍ଣ୍ଣିବାକୁ ତୋର ଗୁଣ ଗତ
ସ୍ଥିର ମୋର କି ଅଛି ଶକତ
କିନ୍ତୁ ସ୍ରୋତସ୍ୱତି !          ସଦା ତୋହ ପ୍ରତି
ଥାଏ ମୋ ମନେ ସ୍ନେହ-ଭକତି, ଲୋ ତଟିନି ! ୬ ।

ଦେଖି ନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ
ହୋଇଣ ସଦୟ          ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ ଜୀବନ, ଲୋ ତଟିନି ! ୭ ।

ଚନ୍ଦ୍ରାବର୍ଦ୍ଧନ ବାଲ୍ୟ ସମୟେ
ବହୁ ଖେଳିଅଛି ତୋ ହୃଦୟେ
ମୋର କେତେ ଅଳି          ଅଛୁ ତୁ ସମ୍ଭାଳି
ମନେ ଥିବ ଜୀବ ଯିବାପାଏ, ଲୋ ତଟିନି ! ୮ ।

ମୋର ପିତୃ-ପିତାମହଗଣ
କରି ତୋ ନୀରେ ସ୍ନାନ-ତର୍ପଣ
ଲକ୍ଷ୍ମଣ-ବନ୍ଦିତା          ଯାଗେଶ୍ୱରୀ ମାତା (୧)
ପଦେ ପୂଜିଥିଲେ ଅନୁକ୍ଷଣ, ଲୋ ତଟିନି !

---

(୧) ଋଷିକୂଳରେ ଯାଗେଶ୍ୱରୀ ଦେବୀଙ୍କ ମନ୍ଦିର ଅଛି । ପ୍ରବାଦ ଅଛି, ଦଣ୍ଡକାରଣ୍ୟରେ ଭ୍ରମଣ କଲାବେଳେ ଲକ୍ଷ୍ମଣ ଏହାଙ୍କୁ ପୂଜା କରିଥିଲେ ।

ସୁକୋମଳ ବାଲି-ଶେଯ ଶେଷେ
ବିଶ୍ରାମିଲେ ତୋ ପୁଲକ ବେଶେ
ପାପତାପ-ନାଶୀ    ତୋର ବାରିରାଶି
ପୂତ କରେ ପ୍ରତି ଗ୍ରାମେ ଦେଶେ, ହେ ତଟିନି ! ୧୦ ।

ଆଜ ତୋ ପୂଜ୍ୟ ଭ୍ରିପୁ ଆକ୍ରାନ୍ତ
ଦେଖି ତଟେ କେତେ ପୂର୍ବସ୍ମୃତି
ନବଭାବ ଧରି    ଉଠେ ଏକ୍ବପରି
ଅତି ଉଚ୍ଛନ୍ନ କରେ ମୋ ଧୃତି, ହେ ତଟିନି ! ୧୧ ।

ରଙ୍ଗକରେ ଅସ୍ତଶିଖିଁ ଦଳ
ପରଶନ୍ତେ ତୋ ବକ୍ଷେ ଲହରି
ତୋ ଶୈବାଳଦଳ    ଏବେ କି ମଞ୍ଜୁଳ
ହେମ ପ୍ରବାଳ ବଲ୍ଲୀସମ, ହେ ତଟିନି ! ୧୨ ।

ଦେଖି ଏହା ମୋର ହୃଦ-ସରିତ
ଆଶା- ସମୀରେ ତରଙ୍ଗାୟିତ
ବିବିଧ ବରଣ    କଳ୍ପନା କିରଣ
ଧଳେ ତନ୍ତ୍ରି ଦିବ୍ୟ ଗୁରୁ ଶତ, ହେ ତଟିନି ! ୧୩ ।

କେତେ ରୁଚିର ସୁଖ ସ୍ୱପନ
ବିଲୋକଇ ମୋ ମନ-ନୟନ
ସାମାନ୍ୟ ଏ ଭବ    ଦୂଷିତ ବିଭବ
କରେ ନାହିଁ ମୁଁ ତିଳେ ଗଣନ, ହେ ତଟିନି ! ୧୪ ।

## ଅବକାଶ-ଚିନ୍ତା

ବେଣୁ ତୋ ପଦେ କରେ ବିନତି
ଜୀବ ଥିବାଯାଏ ସ୍ତୋତ୍ରସ୍ତୁତି !

ଭବ-ଦୁଃଖ ନାଶି        ଭକ ଗଣି ଗଣି
ଚଟେ ଭଣ୍ଡାରରୁ ଏଷ୍ଟ ମତି, ଲୋ ଚଟିଳ ! ୧୫ ।

ପିଣ୍ଡ ଦେଇ ତୋ ପିକଟା-କାସେ
ଯାରେଣ୍ଟୁଷ୍ମ ଜନମ ସକାଶେ

ପୁନ୍ନାଗ ବକୁଳ        ନାନା ଜାତି ଫୁଲ
ଝୁଣ୍ଟୁ ଦେଇ ଥାଉ ତଳପାଶେ, ଲୋ ଚଟିଳ ! ୧୬ ।

ଅବଶେଷେ ମୋ ଜୀବନ-ନଦୀ
ମିଶି ତୋ ସଙ୍ଗରେ ନିରବଧି

ଲଭି ଚିର ଶାନ୍ତ        ହରୁ ସର୍ବକ୍ଳାନ୍ତ
ହେଉ ଅତଳ କାଳ-ଜଳଧି; ଲୋ ଚଟିଳ ! ୧୭ ।



# ଖଣ୍ଡଗିରି ଶିଖରେ

ଏହିକି ସେ ଖଣ୍ଡଗିରି ଯା ଶୋଭାସଙ୍କୁଳ,
ଏହିକି ସେ ଖଣ୍ଡଗିରି ଯାର ଫଳ ଫୁଲ,

ଏହିକି ସେ ଖଣ୍ଡଗିରି ଯାର ବିଜନତା
ଏହିକି ସେ ଖଣ୍ଡଗିରି ଯାର ତରୁଲତା

ବହୁମାନ୍ୱିତ ପୂର୍ବେ ବୌଦ୍ଧ ତାପସ-ମାନସ
ଶୋଭଇ ଶଙ୍ଖରେ ଯାର ଏବେ ବୌଦ୍ଧ ଯଶ ।
ବୌଦ୍ଧ-ମନ୍ତ୍ରାବଳୀ ଆଜି ଅମର ଅକ୍ଷରେ,
ଅଶୋକ ଆଦେଶେ ରାଜେ ଯା ଶିଳା-ବକ୍ଷରେ ।

କାହାନ୍ତି ସେ ଯୋଗିବୃନ୍ଦ କାହାନ୍ତି ଅଶୋକ ?
କାହା ହୃଦ ଦେଖି ଏହା ନ କରିବ ଶୋକ ?
"ଅହିଂସା ପରମଧର୍ମ" ଏ ମହା ମନ୍ତ୍ରର,
ଗମ୍ଭୀର ଶବଦେ ଆଜ ନ ଘୋଷେ ଅନ୍ତର

ଶୂନ୍ୟ ଗୁମ୍ଫା ଅଭ୍ୟନ୍ତରେ ପଶିଣ ପବନ,
ମନ୍ତ୍ରନାଦ ସ୍ଥାନେ କରେ ସନ ସନ ସ୍ୱନ ।

ଆହେ ବୃଦ୍ଧ ଖଣ୍ଡଗିରି ପୁରାଣ-ପ୍ରବୀଣ !
ଦେଖିଅଛ ଉତ୍କଳର କେତେ ଶୁଭ ଦିନ ।

ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା, ବିଭବ,
ସାହସ, ବିକ୍ରମ, ଧୈର୍ଯ୍ୟ, ଜାତୀୟ ଗୌରବ,
ଉତ୍କଳର କେତେ କେତେ ଗୌରବ-କାହାଣୀ,
ଅତୀତ ଘଟନା ଦେଖି ସବୁ ଅଛ ଜାଣି ।
ଏହି ଯେ ସମ୍ମୁଖେ ଶୋଭେ ବିରାଟ ମନ୍ଦିର
ଅନ୍ତରୀକ୍ଷ ମାପିବାକୁ ଟେକିଅଛି ଶିର ।
କାଳବଳେ ହୋଇଅଛି ବିବର୍ଣ୍ଣ ଶରୀର
ତଥାପି ସୁନ୍ଦର ତନୁ ଗମ୍ଭୀର ରୁଚିର ।
ଚଉପାଶେ ଢଶେ କେତେ ଦେବାଳୟଚୟ
କାଳଗର୍ଭେ କେତେ ପୁଣି ଭଜାଇଲେଣି ଲୟ ।
କି ଅସୀମ ଶକ୍ତି କେତେ ବିପୁଳ ବିଭବେ,
କେତେ ଧର୍ମ ଅନୁରାଗେ ଗଢ଼ା ଏ ସରବେ !
କେନ ମହାଧର୍ମ ଏଥି ସାମ୍ୟ ମୈତ୍ରୀ ଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ କମ୍ପା ଦ୍ୱେଷ ବାଦ ଅହଙ୍କାର,
ଅତୀତ ଉତ୍କଳ ଆହା କି ମହା ଉଦାର !
ଧନ୍ୟ ଲଲାଟେନ୍ଦୁ ! ଧନ୍ୟ କେଶରୀ-ପୁଙ୍ଗବ !
ଉତ୍କଳର ପୁଣ୍ୟଶ୍ଲୋକ ଅମର-ଗୌରବ,
ଶୌର୍ଯ୍ୟ-ବୀର୍ଯ୍ୟ କଳା-କାବ୍ୟ ଧନ-ଜ୍ଞାନ-ମାନ
ଥିଲା ଯାଙ୍କ ସୁଶାସନ ପରଶ ବିଧାନ ।
କହ ତାଙ୍କ କଥା ତାଙ୍କ ରାଜ୍ୟ ସମାଚାର,
ନର୍ଗବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।

( ଅପୂର୍ଣ୍ଣ )



# କଟକର ଶିଳାସେତୁ

ସୁଦୃଢ଼ ସୁନ୍ଦର ଆରେ ଶିଳାସେତୁ !
ରକ୍ଷୁଛୁ କଟକ ନଗର ତୋ ହେତୁ ।

ପ୍ରକୃତି-ପ୍ରଭଞ୍ଜକ ଦେଖାଇ ଭ୍ରୂକୁଟି,
କାଳବଳେ ଅଙ୍ଗ ଯାଇ ନାହିଁ ତୁଟି ।

ତରଙ୍ଗ-ପ୍ରହାର ସହୁ ଅନୁକ୍ଷଣେ,
ଶ୍ରମ ହରୁ ନଦୀ ଶୀତଳ ପବନେ ।

ଉଭା ହୋଇଅଛୁ ସୁଗମ୍ଭୀର ଦମ୍ଭେ,
ଗଜେ ବୃଦ୍ଧ ବପୁ ଯେସନ ପ୍ରାରମ୍ଭେ ।

କୋମଳ ଶୈବାଳ ଦଳେ କି ସୁନ୍ଦର,
ତୋର ଶିଳାମୟ ବୃଦ୍ଧ କଳେବର ।

ହେ ପ୍ରାଚୀନ ସେତୁ ! କରିଛୁ ଦର୍ଶନ ।
କଟକ ନଗର ଉତ୍ଥାନ ପତନ ।

ତୁ ଅଟୁ କଟକ-ଇତିହାସ-ଖ୍ୟାତ,
ଫେଡ଼ି କହ କିଛି ଅତୀତର ଗାଥା ।

କେଶରୀ ବଂଶର ଶେଷ ରାଜଗଣ,
କଲେ ଯେବେ ଏହି ନଗର ସ୍ଥାପନ ।

କି ଉତ୍ସାହେ କହ ଏ ଉତ୍କଳ ଜାତି,
ଦେଶ-ହିତ ବ୍ରତେ ଉଠିଥିଲେ ମାତି ।

ମହାପରାକ୍ରମୀ ରାଜା ଶ୍ବେରଗଙ୍କ
ଘୋର ରଣପାଶେ କଲେ ଯୁଦ୍ଧରଙ୍ଗ ।

ଦେଖିଛୁ ସେଦିନ ଉତ୍କଳ-ବିକ୍ରମ,
ଉତ୍କଳବାସୀର ପ୍ରାଣାନ୍ତକ ଶ୍ରମ ।

କାରବାଟୀ ରଣଦୁଆର ବିନଷ୍ଟ,
ଦେଖି ଆଜ ମନେ ନ ପାଉ କି କଷ୍ଟ !

ଆକ୍ରମିଲେ ଯେବେ ଦୁର୍ଦ୍ଧର୍ଷ ଯବନ,
ଚଳିଲ କମାଣ ଗୋଳା ଅଗଣନ ।

ନିଜ ବକ୍ଷେ ସବୁ ସହି ଅକାତରେ,
ସହଜେ ପୂରାଇ ନ ଦେଲୁ ନଗରେ ।

ସେ ଆଘାତ-ଚିହ୍ନ ଥିବ ଆଜଯାଏ,
ସ୍ଥାନେ ସ୍ଥାନେ ଘୋର ସୁବିପୁଳ କାଏ ।

ଆଜଯାଏ ଯେତେ ଏପରି ଘଟଣା,
ଅନୁଭବେ ସବୁ ଅଛି ତୋତେ ଜଣା,

କହ କହ ସେତୁ, ସମସ୍ତ ବିସ୍ତାରି
ଶୁଣନ୍ତୁ ଉତ୍କଳ ସର୍ବ ନରନାରୀ ।

ହୀନବଳେ ଏବେ ଉତ୍କଳ-ସନ୍ତାନ,
ହରାଇଅଛନ୍ତି ଆତ୍ମଶକ୍ତି ଜ୍ଞାନ ।

ଜାଣିବେ ବା ଶୁଣି ପୂର୍ବ ବଡ଼ପଣ,
ସାଧୁ ଅନୁଷ୍ଠାନେ ଦେବେ ପ୍ରାଣମନ ।



# ବିଂଶ ଶତାବ୍ଦୀର ପ୍ରଥମ ଦିନ
# ବାରବାଟୀ ଦର୍ଶନ

ଊନବିଂଶ ଶତ ଖ୍ରୀଷ୍ଟ ଅବ୍ଦ ଗତେ,
ବିଂଶ ଶତ ଅବ୍ଦ ପ୍ରବେଶ ଜଗତେ ।

ଅନନ୍ତ ସମୟ ସାଗର-ଉଦରେ,
ଶତ ବର୍ଷ ଆହା ପଶିଲ କି ଖରେ !

କେତେ କେତେ ମନେ କେତେ କି ବାସନା
ଅପୂର୍ଣ୍ଣ ରହିଲ, ନାହିଁ ଆଶ୍ୱାସନା ।
ମାରକେଶ କାଳ ନ ଗୃହିଁଲ କ୍ଷଣେ,
ଭବେ ଚିର ସ୍ଥିର ନାହିଁ କେହ୍ନ ଜଣେ ।

କେତେ ନାହା ହୃଦେ ଅପାର କଷଣ,
ନ ଭୁଞ୍ଜି ଶୋଣିତ କରଇ ଶୋଷଣ ।
କାଳଠାରେ ନାହିଁ ଦୟା ମାୟା ଲେଶ,
କରିଯାଏ ଖାଲି ନିଜ କାର୍ଯ୍ୟ ଶେଷ ।
ଆସ ନବ ଯୁଗ ନବୀନ ବରଷ,
ନବ ଜୀବନ ଦିଅନା ଅଶେଷ ହରଷ ।
ଶମ୍ଭୁ-ସ୍ୱର୍ଗଧାମୁଁ ସୁଖ ସମାଚାର,
ଆଣି ଏ ଦୁନିଆ କର ହେ ପ୍ରଚାର ।

ଉଟର ଶତାବ୍ଦୀ ଘୋର ତାପ-ଜାଳ,
ସ୍ମରଣର ଶାନ୍ତି-ଜଳରେ ପଖାଳ ।

ନନ୍ଦନକାନନ ନବ ଫୁଲବାସ;
ଦୂଷିତ ଧରଣୀ ଧାମେ ପରକାଶ ।

ଦିବ୍ୟ ଭାବ ଦିଅ ମୋର ଚିତ୍ତେ ଆଣି,
ପଶିବ ଜଗ୍ରତେ ମତ୍ତ ଦେହ ପ୍ରାଣୀ ।

ଆବର ମାଗୁଛି ଯୋଡ଼ କର ବେଦ,
ଭାରତର ପୂର୍ବ ଯଶଃ ଅପ ଖେଦ ।

ଭବରଙ୍କେ ଦିନେ ଯେଉଁ ମହାରାଜ,
ଆହା ହୀନମ୍ଳାନ ଭିକ୍ଷାନ୍ନେ ସେ ଆଜ ।

କର ହେଲେ ଏହା ଦେଖିଣ କରୁଣା,
ନବ ତେଜେ ଥରେ ଉକାଶୁ ପ୍ରରୁଣା ।

ହେ କାଳ ! ତୁମ୍ଭେ ତ ସର୍ବ ଶକ୍ତିମନ୍ତ,
କିଏ ଜାଣେ କାହିଁ ତୁମ୍ଭ ଆଦ୍ୟ ଅନ୍ତ

କିଏ ସେ କଳିବ କେତେ ତୁମ୍ଭ ବଳ;
ହୁଏ ଯେଣୁ ଜଳେ ସ୍ଥଳ; ସ୍ଥଳେ ଜଳ ।

ଏତ୍ତ ସେ ସମ୍ମୁଖେ ବାରବାଟୀ ପଦା,
ଭାଙ୍ଗି ଅଛି ଯହିଁ ଲକ୍ଷ ଲକ୍ଷ ଗଦା ।

ଥିଲା ଯେଉଁ ଖାର-ଦ୍ୱାର-ପ୍ରାଙ୍ଗଣ,
ଭ୍ରମେ ତହିଁ ଆଜ ଶ୍ୱାନ-ଶିବାଗଣ ।

ଶୁଭ୍ର ଶୈଳ ସମ ବିଶାଳ ସଉଧ,
ଶିର ଟେକି ଦିନେ ଭେଦିଣ କଉଦ ।

ଗମ୍ଭୀର ଗରବେ ହୋଇଥିଲା ଠିଆ,
ଦେଖି ଯାହା ଥରୁଥିଲା ଶତ୍ରୁ-ହିଆ ।

## ବିଂଶ ଶତାବ୍ଦୀର ପ୍ରଥମ ଦିନ ବାରବାଟୀ ଦର୍ଶନ

ଆହା ଏବେ ତହିଁ ସ୍ତୂପାକାରେ ମାଟି,
ଭଲୋକ ହୃଦୟ ଯାଏ ପିନା ଫାଟି !

ଥିଲା ଯହିଁ କାଳେ ଗଭୀର ପରିଖା,
ଟେକିଛି କୋମଳ ଶସ୍ୟ ତହିଁ ଶିଖା ।

କାହିଁ ସେ କମାଣ ଅଶନି ଶବଦ,
ଶୁଣି ଯାହା ଶତ୍ରୁ ଶ୍ରବଣ ସ୍ତବଧ ।

ବୀରମଲ୍ଲ-ତେଜା ବାଜା କାହିଁ ଆଜ ?
କାହିଁ ସେ ଅଦମ୍ୟ କଣ୍ଠ ବାଜରାଜ ?

ହେ କାଳ ! ତୁମ୍ଭର ଗର୍ଭେ ସବୁ ଲୀନ,
ଶୁଭିଗା ଜଙ୍ଗଲ ଆଜ ପାନସ୍ଥାନ ।

ହେ କାଳ ! ତୁମ୍ଭର ଅଟଳ ଆଦେଶେ
ଘୋଟିଛି ଦୁର୍ଗଟି ଏ ଜଙ୍ଗଲ ବେଶେ ।

ଆହେ ସ୍ରୋତସ୍ୱିନି ସଖି ଚିତ୍ରୋତ୍ପଳା !
(ଯା ହେବ ଉତ୍କଳ 'ସୁଜଳା ସୁଫଳା' ।)

ପିଆଇ ଆପଣା ସୁଧା ସମ ପୟ
ତୋଷାଇଥିଲୁ ଯେ ବୀର ହୃଦୟ ।

କପରି ଦେଖିଲୁ ତାହାଙ୍କ ନିଧନ ?
ଦେଖି ପୁଣି ସତେ ପାଇଲୁ ଜୀବନ !

ଦେଖିଲୁ କପରି କଷ୍ଟ ସେ ଦୁର୍ଦ୍ଦିନ,
ବାରବାଟୀ ଯେବେ ହେଲା ଶ୍ରୀହୀନ !

କଷ୍ଟକ କଲ୍ଲୋଳେ କରି ଘୋର ନାଦ,
ଶତ୍ରୁକୁଳ-ହୃଦେ ଆତଙ୍କ ପ୍ରମାଦ

ଜନ୍ମାଇଲୁ ନାହିଁ କିପାଁ ଲୋ ଜନନୀ,
ରହିଲୁ କପରି ସ୍ଥିର ତୋ ଧମନୀ ?

ଧନ୍ୟ ପ୍ରଚଣ୍ଡ ଗ୍ରୀଷ୍ମ ରଣବେଶ,
ଶତ୍ରୁ ଦଳେ କିପାଁ ନ କଲୁ ନିଃଶେଷ ?
ଅବା କିପାଁ ତୋର ଭୀଷଣ କବଳ,
ଚରମିଲ ନାହିଁ ସେହୁ ରଙ୍ଗସ୍ଥଳ ?

ବାରବାଟୀ ଲଭି ତୋ ହୃଦେ ଆଶ୍ରମ,
ଭବୁଁ ଲୁଚିଥାନ୍ତା ବାରବାଟୀ ନାମ ।
ସେ କାଳେ ସ୍ତମ୍ଭିତ ହେଲା ତୋର ଗତି,
ତୁ ନାହୁଁ ଲଙ୍ଘିବୁ ସମସ୍ତ ନିୟତି ?

ମହାବଳୀ ଧନ୍ୟ ଧନ୍ୟ ତୁମ୍ଭେ କାଳ !
କେ ଲଙ୍ଘିବ ତୁମ୍ଭ ତୀକ୍ଷ୍ଣ କରବାଳ ?

ଥିଲା ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ରୋଷ ।

ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ କ୍ଷୁରଧାର ।

ଏଣିକି କରୁଣା ଅଟଇ ବିହିତ,
ସାଧ ନବଯୁଗେ ଉତ୍କଳର ହିତ ।

ଉତ୍କଳ-ଉଦ୍ୟାନେ ଫୁଟୁ ନବ ଫୁଲ,
ଉତ୍କଳ-ପାଦପେ ରସମୟ ଫଳ ।

ଉତ୍କଳ-ସରିତେ ପବିତ୍ର ଜୀବନ,
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ,

ଉତ୍କଳ-ଆକାଶେ ନବ ଯଶଃ ରବି
ଉତ୍କଳ-ପ୍ରକୃତି ଧରୁ ନବ ଛବି ।



# ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ

ସୁନ୍ଦର ଶରଦ ସନ୍ଧ୍ୟା ସୁନୀଳ ଆକାଶେ,
ସମ୍ପୂର୍ଣ୍ଣ ଶଶଧର ଉଜ୍ଜ୍ୱଳେ ବିଭାସେ ।

କୋମଳ ମୟୂଖମାଳେ ହସିଉଠେ ମହୀ,
ସରସ ସଙ୍ଗୀତ-ବନ୍ଧ କମ୍ପେ ରହି ରହି ।

ଖେଳେ ତଥିପରେ ଶତ ଶତ ଜ୍ୟୋତ୍ସ୍ନାଧାର,
ନାଚେ ନଦୀ ଗର୍ଭେ ଶଶୀ ସହ ଶତ ତାର ।

ପୁଲକେ ପୂରିତ ଏବେ ହୁଅଇ ଅନ୍ତର,
ପ୍ରକୃତି କି କରିଅଛି ମୋହନ ମନ୍ତର ?

ଠୁଳ ହୋଇଛନ୍ତି ଏଥି ବହୁ ଶତଜନ
ଏ ଛବି ନିରେଖେ ନାହିଁ କାହାର ନୟନ ।

ନାନା ରଙ୍ଗେ ମାତି ଏବେ ହୋଇଛନ୍ତି ଭୋଳ,
ତେଣୁ ଶୁଭେ ଏଡ଼େ ଘୋର ମୁଖରିତ ରୋଳ ।

ବାଜେ ଶଙ୍ଖ, ବାଜେ ଘଣ୍ଟ ପଡ଼େ କରତାଳି,
ମୃଦଙ୍ଗ ମର୍ଦ୍ଦଳ ବାଜେ, ଶୁଭଇ କାହାଳୀ ।

ଧର୍ମ୍ମନୃତ୍ୟେ ହୋଇଛନ୍ତି ମତ୍ତ ବହୁ ଜନ,
ଏ ନୃତ୍ୟରେ କିନ୍ତୁ ଆହା ନାହିଁ ତ ଜୀବନ !

ଶୁଣି ଏହି ସଙ୍କୀର୍ତ୍ତନ ନାଚେ ନାହିଁ ପ୍ରାଣ,
ଜାଗଇତ ନୁହେଁ ହୃଦ ଶୁଣି ଏହି ଗାନ ।

ଅନ୍ତରେ ସଞ୍ଚରେ ନାହିଁ ଲବେ ଧର୍ମଭାବ,
କେ କହିବ ଏ ସଙ୍ଗୀତେ ଅଛି କି ଅଭାବ ?

ଏହି ତ ସେ ମହାନଦୀ ଯାହାର ପୁଳିନେ,
ଏହି ତ ସେ ବାରବାଟୀ ଯହିଁ ଆହା ଦିନେ ।

ବାଜି ତୂରୀ ଭେରୀ ଶଙ୍ଖ ଘୋର ଘନ ଘୋଷେ,
ଉତ୍ତେଜିଲା ପ୍ରତି ପ୍ରାଣ ସାହସେ ସରୋଷେ ?

ଉଚ୍ଛଳ ଉଦ୍ଦାମ ସ୍ରୋତେ ପ୍ରତି ହୃଦସ୍ଥଳୀ,
ପ୍ଲାବି ଦେଶହିତେ ଦେଲା କେତେ ଆତ୍ମବଳି ।

ସେ ଦିନର ତେଜଃପୁଞ୍ଜ ନିସ୍ରାବ ଶକତି,
ସ୍ୱଦେଶ ସ୍ୱଧର୍ମ ପ୍ରତି ଅଟଳ ଭକତି ।

ଭସି ଯାଇଅଛି ସିନା ସମୟ-ତରଙ୍ଗେ,
ଭାସିଯାଏ ଫେନ ଯଥା ମହାନଦୀ-ଅଙ୍ଗେ ।

ଜଗତର ସାକ୍ଷୀ ତୁମ୍ଭେ ହେବ ନିଶାପତି,
ନଭୋ-ବର୍ତ୍ମେ ନିରନ୍ତର କର ଦିବ୍ୟ ଗତି ।

ଜଗତର ନାନା ସ୍ଥାନ କରିଛ ଦର୍ଶନ,
ନାନା ଜାତି ନାନା ଧର୍ମ ଉତ୍‌ଥାନ ପତନ ।

ଫେଜି ସେତୁ ଥରେ ବନ୍ଧୁ ଜଠେ ତ ଆବର,
ସ୍ୱପ୍ନର ଅନନ୍ତ ଯଥା ଆସେ ଉଜାଗର ।

ବାରବାଟୀ ଦଶା ଲଭି କେତେ ରପାତନେ
ଉଠିଅଛୁଟି କି ସ୍ଥାନ ଅଭିନବ ବନେ ।

ତେବେ କମ୍ପା ବାରବାଟୀ ଦେବ ଆଶାସ୍ଥାନ ?
ତେବେ କମ୍ପା ବାରବାଟୀ ବଦନ ମଳନ ?

ଢାଳନ୍ତୁ ସୁଧାକର ଦିବ୍ୟ ସୁଧାଝରା,
ଉଠୁ ମହାନଦୀ-ବକ୍ଷେ ଉତ୍ତୁଙ୍ଗ ଲହରୀ ।

ଧୋଇ ବାରବାଟୀ-ମୁଖ କରୁ ସମୁଜ୍ଜ୍ୱଳ
ଶୁଦ୍ଧ ଧର୍ମମତେ ସବେ ହୁଅନ୍ତୁ ବିହ୍ୱଳ ।

ଅନ୍ତରୁ ଏ ସଙ୍କୀର୍ତ୍ତନେ ପଡ଼ଉ ଉଚ୍ଛ୍ୱାସ,
କର୍ମବୀର, ଧର୍ମବୀର ହୁଅନ୍ତୁ ପ୍ରକାଶ ।



# ରେଲ ଉପରେ ଚିଲିକା ଦର୍ଶନ

ରହ ରହ କ୍ଷଣେ ବାଷ୍ପୀୟଶକଟ,
ଦେଖିବ ଚିଲିକା ସ୍ୱଚ୍ଛ ଚିତ୍ରପଟ ।

ଚିତ୍ର ମଣେ ଯେଣୁ ନାହିଁ ଅନୁଭବ,
ବାସ୍ତବ ଜଗତେ କି ଏ ଛବି ସମ୍ଭବ ?

ନୀଳ ବୀଚିମାଳା ଧୀରେ ଧୀରେ ଯାଏ,
ଲାଗଇ ସ୍ୱପନେ ଦେଖିଲା ପରାଏ ।

ସନାରନ୍ତ ବକ୍ଷେ ପକ୍ଷୀ ଦଳ ଦଳ,
ଓଲଟିଣ ଚଳେ ଦିଗନ୍ତ ସୂଚଳେ ।

ଘୋର ନାଦେ ଯନ୍ତ୍ରୁଁ ଉଠିଲେ ସେ ନଭେ,
ଛୁଟେ ଶତ ଖଗ ଚିଳିକା-ଗରଭେ ।

ସତ୍ୟ ବୋଲି ମନେ ନ ହେଉ ପ୍ରତୀତ,
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।

ଦୂରେ ଦେଖାଯାଏ ନଦାରୁଣ ଯାନ,
ଆସେ ପୁଣି ତରୁ ଟିଳା ବ୍ୟବଧାନ ।

ନିମିଷେ ଲୁଚଏ ନିମିଷେ ଦେଖାଏ,
ସ୍ୱପ୍ନଲବ୍ଧ କ୍ଷିପ୍ର ପ୍ରତିମା ପରାଏ ।

କାହିଁ ଦିଶେ ନୀଳ କାହିଁ ସୁଶ୍ୟାମଳ,
କାହିଁ ବା ଧୂସର କାହିଁବା ଧବଳ ।

## ରେଳ ଉପରେ ଚିଲିକା ଦର୍ଶନ

ନାନା ସ୍ଥାନେ ନାନା ରଙ୍ଗେ ଶର୍ବଜାୟା,
ପ୍ରକାଶି ଚିଲିକା ! କରୁ କେତେ ମାୟା ।

ଦେଖି ବୀଣାପାଣି ଶାଶ୍ବତ ସେବକ
କବି ରାଧାନାଥ ସୁଷମା-ଗ୍ରାହକ,

ଭ୍ରମି ବହୁ ସ୍ଥାନ ବିଶାଳ ଭାରତେ,
ନଦ-ନଦୀ-ମରୁ କାନନ-ପର୍ବତେ,

ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭାଲୁବ୍ଧ ଶୁଦ୍ଧ ଅଭିଳାଷ ।

ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ
ନ ପାଇଲେ ଯଥା ମିଳେ ତୋହଠାରେ ।

ଉତ୍କଳର ଭୂମି ସୌନ୍ଦର୍ଯ୍ୟର ଖଣି,
ସାରସ୍ବତ ନେହେ ବାନ୍ଧୁ ତହିଁ ମଣି

ସୁଦକ୍ଷ ବିଜ୍ଞାଣି ଚିଚ ଯେଉଁ ଦାର
ଅର୍ପିଲେ ଉତ୍କଳ ଭାରତୀ ଗଳାର,

ଚିରଦିନ ତାହା ରହିବ ରୁଚିର,
ତା ଦେଖି ଭବ୍ୟେ ଲୋଡ଼ିବେ ତୋ ତୀର !

ମୁଁ ଅଧମ ମୋର ଭାବୁକତା ନାହିଁ
ତଥାପି ଏ ପ୍ରାଣ କେ ଜାଣେ କିପାଇଁ

ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବିଥିଲି ଆସି ତୋର କୂଳେ ।

ଦେଖିବି ତୋ ଶୋଭା ବସି ନିକାଞ୍ଚନେ,
କର୍ମ-ବନ୍ଧେ ଥିଲି ମନ କଥା ମନେ,

ଏତେକାଳ ଅନ୍ତେ ହେଉଥିଲି ଯୋଗ,
ଆଜି ସେ ସୁଯୋଗ ହେଲା କାହିଁ ଭୋଗ !

ରକ୍ଷଣ ଜଞ୍ଜାଳ ଚିନ୍ତା ଜଗତେ,
ସଂସାର ସୋଦର ବାନ୍ଧବ ସଙ୍ଗତେ ।

ଇଚ୍ଛାମତେ କାହୁଁ ଚଳିବ ବା ଜନ ?
ସମାଜେ ନିଜର ନୁହେ ନିଜ ମନ ।

ବସି କେତେଥର ନୀରବ ବିଜନେ
ଦେଖିଛି ତୋ ରୂପ କଳ୍ପନା-ନୟନେ ।

ତୋ ମାନ ଚରଣେ ଲୋଟେ ନିରନ୍ତର,
ଅନୁପମ ଦ୍ରବ୍ୟ ସ୍ୱରଣ୍ଣସ୍ଥ କର ।

ଗୃହ ଶସ୍ୟସ୍ତୂପ ତୋର ବକ୍ଷସ୍ଥଳେ,
ନାଚେ ଶତ ଶତ ମୋ କଳ୍ପନା ବଳେ ।

କଳ୍ପନା ଚିତ୍ରିତ ତୋ ସୁନ୍ଦର ତନୁ,
କାଳେ କାଳେ ଆଉ ନ ଯିବ ମୋ ମନୁ ।

ଆଜ ଲୋ ଶଳିକା ! କଳ୍ପନା ପ୍ରଭାବେ
ପୂରଇ ମୋ ମନ ଆଶା କେତେ ଭାବେ ।

ଅତୀତର ସୁଖ ସ୍ମୃତି ସମୁଦୟ,
ହର୍ଷ-ଖେଦେ କରେ ଆକୁଳ ହୃଦୟ ।

ତୋ ମଧୁର ନାମେ ରହିଛି ଜଡ଼ିତ,
ଗଉରବଯୁତ ଉତ୍କଳ ଅତୀତ ।

କାହିଁ ଉତ୍କଳର ସେ ସୁକୃତବଣି ?
ଯାହାର ପ୍ରଭାବେ ଭ୍ରମୁ ବ୍ରହ୍ମବଣି

ନଜେ ନିରଞ୍ଜନ ଜଗତ-ଈଶ୍ୱର
ଧରିଣ ସୈନିକ ନର କଳେବର

ଉତ୍କଳର ଯଶ ପ୍ରତିଷ୍ଠା ରକ୍ଷଣେ
ଲଢ଼େ କଳେ ଘୋର ସମର-ପ୍ରାଙ୍ଗଣେ ।

## ରେଳ ଉପରେ ଚିଲିକା ଦର୍ଶନ

କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ ?
ପତିତ ଉତ୍କଳ ଆହା କି ବିକୃତ !

ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛୁ ସବୁ କର୍ମ-ଧର୍ମ-ବଳ ।

କାହିଁ ମୁଗେ ତେଣୁ ପୂର୍ବ ପୁଣ୍ୟକାମ୍,
ହୃଦୟେ ସ୍ୱର୍ଗୀୟ ଧର୍ମଜାତ ଶାନ୍ତି ।

ଜୀବନେ ପତିତ ଉଦ୍ଭ୍ରାନ୍ତ ଶକତି,
ଉତ୍କଳର ଆହା କି ଘୋର ଦୁର୍ଗତି !

କାହିଁ ଗଲା ପୂର୍ବ ଓଡ଼ିଆ ଟେକାଇତ ?
କାହିଁ ସେ ମାଧବ ଉଦ୍ଦାମ ସଙ୍ଗୀତ ?

ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ?

କଥାରେ ରହିଛି ସବୁ ଆଜପାଏ,
ସାଧବାଣୀ ବୋହୂ ଖୋଇଛି ବନ୍ଧାଏ ।

ଜଙ୍ଗଲିତ ଚୋଲ ଦୂର ରମ୍ୟ ତଟ,
ଦୁର୍ଗମ ଶଇଳ ଅଭେଦ୍ୟ ସଙ୍କଟ ।

ଖେଳାଉ ଥିଲେ ଯେ ଧରା ନିଜ ଦେହେ
ଉତ୍କଳର କେତେ ବୀର ଶିଶୁ ସ୍ନେହେ ।

ଅଛି ସେହି ଗିରି ଅଛି ସେ ବିପିନ,
ଅଛି ଚୋର ଶିଳା ସୁଦୃଢ଼ ପୁଳିନ,

କିନ୍ତୁ କାହିଁ ଆହା ଏବେ ସେ ବୀରତା ?
ଓଡ଼ିଆ ଜାତିର ପୂର୍ବ ଜାଗ୍ରତା ?



# ଗଞ୍ଜାମ ଜାତୀୟ ସମିତି

( ୧ )

ଅନ୍ଧାର ଉତ୍କଳ-ନଭେ  ଏବେ ଶୁଭଦିନେ,
ଉଇଁଛି ଉଜ୍ଜ୍ୱଳ ଆଶା-  ତାରକା ଦକ୍ଷିଣେ ।
ନବୋଦିତ ଯୋଗୁଁ ତ୍ରସ୍ତ  ଅଳପ ପ୍ରକାଶ
ତଥାପି ତାହାର ପ୍ରତି  ପରଣେ ଆଶ୍ୱାସ ।

ଉତ୍କଳ ଜାଗ୍ର ସ୍ରୋତ  ସୁନିଶ୍ଚିତ ପଥ,
ଦେଖାଇବ ଏହି କ୍ଷୁଦ୍ର  ତାରକା ସନ୍ତତ,
ଓଡ଼ିଆ ଜାତିର ଏହା  ହେବ ଧ୍ରୁବତାରା,
ନାଶି ତମଃ ପ୍ରକାଶିବ  ଯଶଃ ଜ୍ୟୋତିଧାରା ।

( ୨ )

ବନେ ଗୁଳ ଯାଇଅଛୁ ଆହା ସେ ସୁଦିନ !
ସୁଭଗା ଜଙ୍ଗଲ ଦେଶ ଆଜ ଘନଘୀନ ।
ବନେ ଯେଉଁ ଧ୍ରୁବତାର କାନ୍ତ ଯାହା କାଳେ,
ଚଲକାର ବକ୍ଷବକ୍ଷେ ମାଳ ଉର୍ମିମାଳେ,
ଚଳଇଲ ଶତ ଶତ ଓଡ଼ିଆ ବୋଇତ
ଜାତୀୟ ସମିତିରୂପେ ଆଜ ସେ ଉଦିତ ।

( ୩ )

ଧନ୍ୟ ହେ ଗଞ୍ଜାମବାସୀ ଓଡ଼ିଆ ସକଳ !
ଧନ୍ୟ ତୁମ୍ଭ କଉଶଳ ଧନ୍ୟ ତୁମ୍ଭ ବଳ ।
ରାଧ କୃଷ୍ଣ ପ୍ରେମ କଥା ମଧୁର ସଙ୍ଗୀତେ,
ଚନ୍ଦ୍ରିମୁଖେ ବଳଦେବ ଯହିଁ ଶୁଭିଗତେ
ଯହିଁ ମହାକବି ଭଞ୍ଜ ଶ୍ରୀରାମ ଚରିତ,
ଗାଇଲେ ପ୍ରଥମ କାବ୍ୟ ରସମୟ ଗୀତ ।
ରାମକୃଷ୍ଣ ପଦ ଲାଗି (୧) ଯାର ଧୂଳ ପୂତ
ତୁମ୍ଭେମାନେ ସେ ଗଞ୍ଜାମ- ଉପଯୁକ୍ତ ସୁତ ।

---

(୧) କବି କୃଷ୍ଣ ସିଂହ ଗଞ୍ଜାମ ଅଧିବାସୀ ଥିଲେ । ବଳରାମ ଦାସ ଋଷିକୁଲ୍ୟା ନଦୀକୂଳରେ କେତେକ ଦିନ ଆଶ୍ରମ କରିଥିବାର ତାଙ୍କ 'ରାମାୟଣ'ରୁ ଦେଖାଯାଏ ।

( ୪ )

ଦେଖାଇଲ ଯେ ଉତ୍ସାହ ଉଦ୍ୟମ ଶକତ,
ମାତୃଭାଷା ମାତୃଭୂମି ଅଟଳ ଭକତ ।
ଦେଲ ଯେ ଜାଗ୍ରତ୍ର ଭବ ଦୃଢ଼ ପରଚୟ,
ଚିରଦିନ ଗାଇବେ ତା ଉତ୍କଳ-ତନୟ;
ଉତ୍କଳର ଇତିହାସେ ପାଇବ ତା ସ୍ଥାନ,
ଭବୀ ବଂଶ ଦେଖାଇବେ ସାଦର ସମ୍ମାନ ।
ଜାଗ୍ରତ୍ର ଜୀବନେ ଏହ୍ଵ ପ୍ରଧାନ ଘଟନା,
ସ୍ଥାନେ ସ୍ଥାନେ ଓଡ଼ିଆଏ କରିବେ ବନ୍ଦନା ।

( ୫ )

ସୁସଭ୍ୟ ଇଂରେଜ- ରାଜ-ପିତୃ ସୁଶାସନେ
ଶତ ବର୍ଷ ଅନ୍ତେ ଏବେ ଉତ୍କଳ ଭୁବନେ,
ଫଳଲା ପାଶ୍ଚାତ୍ୟ ଶିକ୍ଷା ସୁମଙ୍ଗଳ ଫଳ,
ସମବେତ ଉଦ୍ୟମର ଅଦଭୁତ ବଳ ।
ସ୍ଵଦେଶ ସ୍ଵଜାତି ହିତେ ସାଧୁ ସ୍ଵାର୍ଥତ୍ୟାଗ,
ସ୍ଵସମାଜ ସ୍ଵଧରମେ ଗାଢ଼ ଅନୁରାଗ ।
ସୁସାହସେ ଦେଖାଇଲ ଯେ ଉଚ୍ଚ ଆଦର୍ଶ,
ଅନୁସରନ୍ତୁ ଉତ୍କଳେ ସର୍ବେ ପ୍ରତି ବର୍ଷ ।



# ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ଛାତ୍ରମାନଙ୍କ ପ୍ରତି

ଜନ୍ମଛନ୍ତି କବ ଯା'ଙ୍କୁ ତପୋବନ,
ଜର ଘର ତାଙ୍କୁ ସେ ନାମ ଭଜନ ।
ଅଶାନ୍ତି ଅନୈକ୍ୟ ହିଂସା ଦ୍ୱେଷ ରୋଷ,
ଆଳସ୍ୟ କ୍ଷୁଦ୍ରତା ବୃଥା ଅସନ୍ତୋଷ ।
ବ୍ରହ୍ମବର୍ଚ୍ଛେ ବଶେ ନ ପଶୁ ଏ ସ୍ଥଳେ;
ଜ୍ଞାନେ ଉଦ୍ଭାସିତ ହେଉ ଏ ଉଜ୍ଜ୍ୱଳେ ।
ପୁଣ୍ୟ ମାଳାଟଳେ ପୁଣ୍ୟତମ ସ୍ଥାନ,
ହୋଇ ଲଭୁ ସଦା ଲୋକରେ ସମ୍ମାନ ।
କର୍ମୀ ଧର୍ମୀ ଯୋଗୀ ପୁରୁଷ ପ୍ରସୂତ,
ବୋଲି ଦେଉଦର ପ୍ରସରୁ ବିଭୂତି ।
ଶ୍ରେଷ୍ଠବଂଶେ ତୁମ୍ଭେ ଲଭିଛ ଜନମ,
ବିଧିରେ ସମାଜେ ଆସନ ପ୍ରଥମ ।

ବାଣୀ-ଉପାସନା ତୁମ୍ଭ ଜାତିଧର୍ମ;
ସତ୍ୟାନୁସନ୍ଧାନ ପ୍ରିୟ ନିତ୍ୟକର୍ମ ।

ସ୍ୱାର୍ଥତ୍ୟାଗ ତୁମ୍ଭ ବଂଶର ଗରିମା,
ସତତ ସୌଜନ୍ୟ ଜନସ୍ଥ ବଡ଼ିମା !

କୁଳ ଗଉରବ ବଂଶ ବଡ଼ପଣ,
ରକ୍ଷିବାକୁ ଭାଇ ଅଛି ଯେବେ ମନ ।

ଗଢ଼ ଏଥି ଦୃଢ଼େ ଜୀବନ-ବୋଇତ,
କର ଆୟୋଜନ ଭବିଷ୍ୟତ ହିତ ।

ଭାରତ ଅର୍ଣ୍ଣବେ କି ଘୋର ତୋଫାନ,
ଦେଖ ଭାଇ ଆଗୁଁ ହୁଅ ସାବଧାନ ।

ବହେ ଅନର୍ଗଳ ପବନ କରାଳ,
ଉଠଇ ଉଦ୍ଦଣ୍ଡ ଭୀମ ଊର୍ମିଜାଳ ।

କେତେ ଦ୍ୱୀପ ସ୍ତମ୍ଭ ନିମଗନ ଜଳେ,
କେତେ ଶତ ଶୈଳ ମିଶିଲେଣି ତଳେ ।

ଭାରତ ଜାତୀୟ-ଜୀବନ ତରଣୀ,
ପାଏ ନାହିଁ ଏବେ ସହଜ ସରଣୀ ।

ଜାତୀୟତା-ପୋତେ ଜୀବନ-ବୋଇତ,
ଯୋଡ଼ିବା ତ ପ୍ରତି ଜନର ଉଚିତ ।

ପଡ଼ିବ ହେବାକୁ ଏ ତୋଫାନେ ପାରି,
ହେବଟି କି ଭାଇ ପାରଗ କାଣ୍ଡାରୀ ?

ସେହିପରି ବଳ କର ଆୟୋଜନ,
ଆଗହୁଁ ସେପରି କର ଆୟୋଜନ ।

ବ୍ରାହ୍ମଣ ସମିତ ଗୃହାବାସରେ

ଭାରତବାସୀର ଧର୍ମବଳ ସାର,
'ଧର୍ମ ଭଜନା ଆଜ ଏତେକ ଗୁରୁଭାର ।

ଧର୍ମେ ପଶ ଆଗେ ତୁମ୍ଭ ଅଧିକାର,
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।

ଦେଖାଅ ଜୀବନେ ଅଦ୍ଭୁତ ଶକତି;
କର୍ମେ ଅନାସକ୍ତି ଧର୍ମେ ଦୃଢ଼ ମତି ।

'ପୂତ 'କର୍ମଭୂମି' ଏ ଭାରତ ଧାମେ,
ଆର୍ଯ୍ୟ ଅପମାନ କର କାହା ନାମେ ?

ପ୍ରେମେ ଆଲିଙ୍ଗନ କର ସର୍ବଜନେ,
ଉଚ୍ଛୁଳାଅ ପ୍ରେମ ଉଚ୍ଛ୍ୱାସ ଜୀବନେ ।

ତୁମ୍ଭ ଆଦରଶେ ଅନ୍ୟ ସେବକ ଜାତି,
ଉଠିବେ ପଲକେ ସାଧୁ କାର୍ଯ୍ୟେ ମାତି ।

ମାନ ବଡ଼ପଣ ସିନା ଭାଗ୍ୟାଧୀନ,
ସେଥିଲାଗି ମନ ନ କର ମଳିନ ।

ସତ୍ୟ, ଶମ, ଦମ, ଶଉଚ, ତିତିକ୍ଷା,
ଏ ଆଦି ସକଳ ତୁମ୍ଭ କୁଳ-ଦୀକ୍ଷା ।

ଆଚରଣ ତାହା ଜୀବନେ କରନ୍ତେ,
ବ୍ରହ୍ମତ୍ୱର ତେଜ ପ୍ରକାଶ ଜଗତେ ।

ଲୋକହିତେ ପ୍ରାଣ-ପ୍ରଦାନ-ପ୍ରବଣ-
ଦଧୀଚି ଶୋଣିତ କରୁଛ ଧାରଣ ।

ଦମ୍ଭ ସ୍ୱାର୍ଥବଳ ଦେଖାଅ ଦେ ତ୍ୟାଗ,
ଭାରତ ଜ ଶିଷ୍ଟ-ମହାଯାଗେ ଲାଗ ।

ବୀରେନ୍ଦ୍ର ଅଗ୍ରଣୀ କୃପ, ଦ୍ରୋଣାଚାର୍ଯ୍ୟ
ଭୀଷ୍ମ ପୂର୍ବଜଣେ ନ କଲେ କି କାର୍ଯ୍ୟ !

ପରଶୁ ପ୍ରଭାବେ ଦେବ ନିରଞ୍ଜନ
କରିଣ ଦୁରନ୍ତ ନୃପତି ନିଧନ ।

ବିଶ୍ୱହିତେ କଲେ ଶୋଣିତ ତର୍ପଣ,
ସେ କଥା କି ଆଜି ନ ହୁଏ ସ୍ମରଣ ?

ନିଜ ସୁଖ ଲାଗି ଜାତି ନୁହେଁ ବନ୍ଧୁ,
ବିଶ୍ୱହିତେ ବନ୍ଧୁ ପ୍ରତି ରକ୍ତବିନ୍ଦୁ ।

ଦେଖାଅ ଏ ସତ୍ୟ ଆପଣା ଚରଣେ,
ଦିଅ ଏହି ମନ୍ତ୍ର ସର୍ବ କର୍ଣ୍ଣ କାନେ ।

ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ,
ସାଧ ବିଶ୍ୱହିତ ତେଜି ଅଭିମାନ ।



# କାମ

କାମଦେବ, ସୃଷ୍ଟି ସ୍ଥିତି ସଂହାର ନିଦାନ
ତୁମରି ପ୍ରଭାବେ ଫୁଟେ ପୁଷ୍ପରାଜି ବନେ,
ମଞ୍ଜୁ ଗୁଞ୍ଜେ ଅଳି, ଗାଏ କୋକିଳ ସୁତାନ,
ସରସ ଉଲ୍ଲାସ ଜନ୍ମେ ଜଗତ ଜୀବନେ ।

ପାଦପେ ବଲ୍ଲରୀ, ମେଘେ ବିଜୁଳି ଜଡ଼ିତ,
ତଟେ ଊର୍ମି ସିନ୍ଧୁ ଜଳେ ଇନ୍ଦୁ ଆଲିଙ୍ଗନେ,
ଅଙ୍ଗେ ଅଙ୍ଗ, ପ୍ରାଣେ ପ୍ରାଣ ଦୁଇ ମିଳିତ,
ସହଜ ପବିତ୍ର ପ୍ରେମେ, ତୁମରି ପ୍ରେରଣେ ।

ସୁମଧୁର-ମଧୁରାଜ୍ୟ-ଦେବ ରତିପତି !
ତବ ମୃଦୁ ଆସ୍ୱାଦନେ ପୁଲକେ ହୃଦୟ ।
ଦାରୁଣ ତାଡ଼ନା ମୂଢ଼ ଉପାସକ ପ୍ରତି
ଆମରଣ ଦୁଃଖ-ଶୋକ-ଅନୁତାପମୟ ।

ତୁମ୍ଭ ମହାଭାବେ ଜ୍ଞାନ କରେ ଅନୁଭୂତ
ଶୁଦ୍ଧ ଦିବ୍ୟ ବିଭୁ-ପ୍ରେମ-ଜଡ଼ ପ୍ରତିକୃତି ।



# କ୍ରୋଧ

ମାନବ ଦୁରନ୍ତ ରିପୁ ଅନଳ ପ୍ରତିମ
ସାଧୁମୁଖେ କ୍ରୋଧ ! ସଦା ତବ ନିନ୍ଦାବାଦ;
ଭୂମ୍ନ ଆବର୍ତ୍ତେ ଘଟେ ଅଶାନ୍ତ ଅସୀମ,
ସମାଜ ଶାସନେ ଗୋଟେ ଘୋର ପରମାଦ !

ମହାକାଳରୂପୀ ଦେବ ! ଯେବେ ପରକାଶେ
ସତ୍ୟର ସପକ୍ଷେ ତବ ଶ୍ୟାମକାନ୍ତ କାୟା
ନାଶେ ପାପୀ ଭୟେ, ନାଚେ ଧାର୍ମିକ ଉଲ୍ଲାସେ,
ସେ ମୂର୍ତ୍ତି ସମ୍ମୁଖେ ନମେ କ୍ଷୀଣ ଭବମାୟା ।

ଜର୍ଜରିତ ଅତ୍ୟାଚାର ଅନ୍ୟାୟ ଦୂଷଣେ
ପ୍ରଚଣ୍ଡ ପ୍ରଭାବେ ପ୍ରେର (୧) ତ୍ରିଂଶକୋଟି ପ୍ରାଣେ
ସତ୍ୟ-ଧର୍ମ-ନ୍ୟାୟ ସଖା ରୁଦ୍ରରୂପୀ କ୍ରୋଧ !
ନମେ ତବ ପଦେ, କର ପାପ ପ୍ରତିଶୋଧ ।



(୧) ପ୍ରେର—ପ୍ରେରଣା କର (inspiring)

## ରେଭେନ୍‌ସା କଲେଜରୁ ବିଦାୟ

ସତେ ଆଜ ଜନନୀ ! ଏ ଅଧମ ତନୟ

ସଂସାର-ଘଟଣା ବଳେ

ଭାସି ଶୋକ-ଦୁଃଖ-ଜଳେ

ତ୍ୟଜିଲା ତୁମ୍ଭର ସ୍ନେହ ଅଙ୍କ ମଧୁମୟ,

ନିଃସହାୟେ ଲୋଡ଼େ ଏବେ ସଂସାରେ ଆଶ୍ରୟ ।

ସଂସାର ବିଷମ ସ୍ଥାନ

ନାହିଁ ଜ୍ଞାନ, ନାହିଁ ଧ୍ୟାନ

ଅଜ୍ଞାନେ ସକଳେ ଏଥି ସତତ ଚଞ୍ଚଳ,

ତୋ କୋଳ ସମାନ ନାହିଁ ଶାନ୍ତିମୟ ସ୍ଥଳ ।

କେତେ ଭବ୍ୟ ଭାବରାଶି
ମୋ ହୃଦ-ତରଙ୍ଗେ ଭାସି
ଯାଉଥିଲା ଥିଲି ଯେବେ ତୋର କୋଳେ ଖେଳେ,
ସେ ସବୁ ଉଭିବ କି ଏବେ ଭବସ୍ରୋତେ ?

ତୋ ମନୋହର ଉଦ୍ୟାନେ
ନିକୁଞ୍ଜେ ଏକଧାରେ
ଚନ୍ଦ୍ରାଲୋକେ ବିହରଣ ପୁଷ୍ପ ବନ୍ଧୁମେଳେ,
ଦେଖିଛୁ ଅପୂର୍ବ କେତେ ଚିତ୍ର ନବଳେ ଖେଳେ ।

ହେଲେ ଏ ଯେ ନରଦେହ
ଥିଲେ କଣ୍ଠାଗ୍ରେ ସ୍ନେହ
ସ୍ୱପ୍ନେ ଭଳେ ଦେଖି ନାହିଁ ତାଙ୍କ ସୁଧାମୁଖ,
ଆଜନମ ଜାଣୁ ମୋର ଚିର ସଖା ଦୁଃଖ ।

କିନ୍ତୁ ମୋ ମନ-ନୟନ
କର ମାତ ! ଉନ୍ମୀଳନ
ଚଖାଇଚ ମୋତେ ଯେଉଁ ସାମାନ୍ୟ ଅମୃତ,
ଆମରଣ ତହିଁ ଯୋଗେ ହେବି କୃତ୍ୟକୃତ୍ୟ ।

ଥିଲେ ଯହିଁ ତହିଁ ମାତ !
ଅଜ୍ଞାତ କି ଅବା ଖ୍ୟାତ
ଜାଗ୍ରତ ଥିବ ମୋ ମନେ ତୁମ୍ଭ କଥା ନିତ୍ୟ,
ହୁଏ ଯେଡ଼େ ବର୍ଷୀୟାନ୍
ଥିବ ତୁମ୍ଭ ପଦେ ଧ୍ୟାନ
ତୁମ୍ଭ ହିତେ ଜନମି ଗୋ ! ଲଭିବଇ ପ୍ରୀତି ।

ରେଭେନ୍ସା କଲେଜରୁ ବିଦାୟ

ପୂର୍ବେ ଉଇଁ ଦିବାକର
କ୍ରମେ ଉଠେ ଯେତେ ଦୂର
ଅନ୍ତର ମମତା ତେତେ ଶୈଶବ ସଦନେ ।

ଅସ୍ତାଚଳ ଶିରଦେଶେ
ପଶିବେଣି ଦିବାବଶେଷେ
ଓରଣେ ସ୍ୱାକ୍ଷର କରେ ପୂର୍ବାଶା ଚରଣେ ।

ଶିଖାଇଛ ଯେଉଁ ଶିକ୍ଷା
ଦେଇଅଛ ଯେଉଁ ଦୀକ୍ଷା
ନିରନ୍ତର ପ୍ରତିଫଳୁ ତାହା ମୋ ଜୀବନେ
ଏହି ଭିକ୍ଷା ଅକିଞ୍ଚନ କରେ ଶ୍ରୀଚରଣେ ।



# ମୋ ନାନୀ

ଆବାଲ୍ୟ ବିଧବା ଆହା ! କେବେ ମାତ୍ର କାହାରେ
ଭୋଗି ନାହିଁ ଭବ୍ୟ ଶୁଭ ଦାମ୍ପତ୍ୟ-ପ୍ରଣୟ,
ପର ସେବାବ୍ରତେ ନିଜ ଜୀବନ ସଞ୍ଚୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।

ସଦା ସମଭାବ ତବ ଭିତରେ ବାହାରେ,
ପର ଲାଗି ଆନ୍ଦୋଳିତ ସତତ ହୃଦୟ,
ଆଜୀବନ ତେଜି ନିଜ ସୁଖ ସମୁଚ୍ଚୟ,
ସୁଧା ସମ ମାତୃଭାବ ମିଳେ ତୁମଠାରେ ।

ସଦାଶୟା ସ୍ନେହମୟୀ ପରମପାବନୀ,
ଜୀବନ ମହତ ଲକ୍ଷ୍ୟ ସାଧିଛ ଭୂତଳେ,
ତୁମ ପନ୍ଥ ଆଚରିଲେ ସକଳ କାମିନୀ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।

ତୁମର ନିଷ୍କାମ ସ୍ନେହ ସଦା ଥିବ ମନେ,
ଯହିଁ ଥିଲେ ସ୍ମରୁଥିବି ନିତି "ନାନୀ, ନାନୀ" ।



# ଛବିଶ ବର୍ଷ ପ୍ରବେଶ

ଅଲକ୍ଷିତେ ନିଃଶବ୍ଦେ ଆହା କି ବେଗରେ
ବହି ଯାଉଅଛି କାଳ-ନିରପେକ୍ଷ ନଦୀ !
ଅସଂଖ୍ୟ କଳ୍ପନା-କଳ୍ପ ରଚୁଛି ଅନ୍ତରେ
ବିକଶିତ ହୋଇ ନାହିଁ ଗୋଟିଏ ଅବଧି ।

ପଚିଶ ଛବିଶ ବର୍ଷ ହେଲା ଏବେ ଗତ
ପଛକୁ ଚାହିଁଲେ ହୃଦ ଆହା କି ବିକଳ !
ଅତୀତ କେବଳ ମୋର ରୁକ୍ଷ ସୈକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ !

ଏ ଦଗ୍ଧ ନାବ ଆଜି ଜୀବନ-ସନ୍ଧିରେ
ବାଞ୍ଛିବ ବା କେତେ ଧନ ପଦବୀ ସମ୍ମାନ,
ମଧ୍ୟାହ୍ନେ ପ୍ରଦୋଷ ତନ୍ଦ୍ରା ପଶିଲା ମୋ ଚକ୍ଷେ,
ମୋ ଆଶା ମୁକୁଳରାଜି ବସନ୍ତେ ମଳିନ ।

ଧର୍ମ ଅନୁକୂଳ ଯେବେ ମୋ କାମନାଚୟ,
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ !



## ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି

ପ୍ରଣୟର ମୃଦୁହାସ ଲୋଚକ,

ସୁଖ ଦୁଃଖ ଆହ୍ଲାଦ ଯାତନା,

ଜୀବନେ ମୁଁ ଭୋଗିଛି ଅନେକ,

ନାହିଁ ଆଉ ଅଧିକେ କାମନା !

ମୋ ଜୀବନ-ବୀଣାଯନ୍ତ୍ର ତାର,

ସ୍ୱରହୀନ ବଇଚମ ଅଛି

ଏବେ କଇମ ହେଉଛି ଆଉ,

ଭେକ ଆଦ୍ୟ ମୋହନୀ ଶକତି ।

ମଧୁକାଳ ଆଶା-ଫୁଲଗଜ

[illegible]ଦାଦର ଚୟନ କରଣେ,

ଝାଉଁଳିଛି କ ବଷାଦେ ଆଜ

ଗନ୍ଧହୀନ ଜୀବନ-କାନନେ ।

## ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି

ସୁନ୍ଦରତର ମୃଦୁ ଗନ୍ଧବହ
ବିସ୍ତାରଛନ୍ତି ନିଜ ଶୀତଳତା,
ଭୀମ ଝଞ୍ଜା ପବନ ପ୍ରବାହ
ନାଶେ ଏବେ ହୃଦ-ସରସତା ।

ଭ୍ରମି ଭ୍ରମି ଅବସନ୍ନ କାୟା
ବିଷମ ଏ ବନ୍ଧୁର ବାଟେ,
ଦେଖିବଇଁ ଯେବେ ସ୍ନିଗ୍‌ଧ ଛାୟା
ବିଶ୍ରାମିବ ତର୍କି ଜଳଘାଟେ ।

ଶୁଣି ଖଗ ମଧୁର କାକଳୀ
ଜୀର୍ଣ୍ଣ ବୀଣା ରଖିବ ସମ୍ବାଦ,
ପକ୍ଷୀଗୀତେ ଦେବ କରତାଳି
କେହି ମୋର ନ ଥିବେ ବିବାଦ

ତରୁଲତା ନବ କିଶଳୟେ
ବିରଚିଣ କୋମଳ ଆସନ,
ଶୋଇବି ମୁଁ ବିତାନ ହୃଦୟେ
ଶୁଣିବାକୁ ବାୟୁ ସନ ସନ ।



# ଚନ୍ଦ୍ର

( ୧ )

ଆରେ ପୂର୍ଣ୍ଣ ନିଶାମଣି !    ଯେ କାଳେ ତୁ ନିଶିରାଣୀ
ସଙ୍ଗେ କରୁ ପ୍ରିୟ ସମ୍ଭାଷଣ,
କାହୁଁ କମ୍ପା ତୋ ଉତ୍ପତ୍ତି    କଲା କେଉଁ ମହାମତି
ଏ ତତ୍ତ୍ୱ ସକଳ ସଦା ଭାବଇ ମୋ ମନ,
ଦେଖିଲେ ସେ କାଳେ ତୋର ବିମଳ ବଦନ ।

( ୨ )

କେ କହେ ତୋର ଶରୀର    ଧରିଛୁ ବହୁ ଭୂଧର,
ବହୁ ଶତ ନିର୍ଝର କାନନ,
ନାହିଁ ତୋହର ପବନ,    ଅଟୁ ତୁ ଧରା ସମାନ,
ଅତି ସୁପ୍ରକାଣ୍ଡ ଏକ ବସ୍ତୁ ଅଚେତନ;
ମାତ୍ର ଏ ବଚ୍ଚର କେବେ ନ କରେ ମୋ ମନ ।

( ୩ )

ଯଥାର୍ଥ ଅଚ୍ଛ ତୁ କଣ ? କହରେ ରଜନୀ-ଶଶ
ନକ୍ଷତ୍ର ମଧ୍ୟେ କି କରୁଛୁ ସାଧନ ?
ହସୁଛୁ ଅତି ଆନନ୍ଦେ, ଏ ନିଶୀଥେ ମନ୍ଦେ ମନ୍ଦେ
ଅଂଶୁମାନେ ଉମଣ୍ଡିଣ ସମସ୍ତ ଭୁବନ,
ଏ ମହାଲକ୍ଷ୍ୟ କି କେବେ ଜାଣିବ ଏ ଜନ ?

( ୪ )

ଏ ସ୍ଥୂଳ ପାର୍ଥିବ ଜନ କି ସ୍ଥୂଳ ଏହାର ଜ୍ଞାନ,
ଭୁଲି ପୁଣି ସୁରଲୋକବାସୀ,
ତୋ ନିଗୂଢ଼ ତତ୍ତ୍ୱମାନ, ବୁଝିବ କି ଅଜ୍ଞାନ,
ଶାନ୍ତମୟୀ ନିଶିରାଣୀ ଯା ପାଦର ଦାସୀ,
ଅନୁଗତ ଯାଏ ତାର ଗ୍ରହ ରାଶି ରାଶି ।

( ୫ )

ଚିତ୍ତ ହୁଏ ଅନୁମିତ, ଗାଉ ତୁ ପ୍ରଭୁ-ସଙ୍ଗୀତ;
ପ୍ରକାଶିବା ପାଇଁ ଏ ଜଗତେ,
କର୍ତ୍ତାଙ୍କର ଅବସ୍ଥିତି କଲେ ଯେ ତୋର ଉତ୍ପତ୍ତି
ନିର୍ଜୀବ ବୋଲିଣ ତୋତେ ବୋଲିବ କେମନ୍ତେ ?
ରହୁ ଏ ମୋ ମୂଢ଼ ମନ ତୋ ପ୍ରଭୁ-ସଙ୍ଗୀତେ ।



# ଏକ ଅସରା ବର୍ଷାର ଅବ୍ୟବହିତ ପରେ
# ନରାଜ ଦର୍ଶନ

ସତ୍ୟ ଶାନ୍ତି ସୁଖ ସଦା ମାନବ-ଜୀବନ
ଖୋଜଇ ବ୍ୟାକୁଳେ ବ୍ୟସ୍ତ ସଂସାର ଗହଳେ,

ମିଳଲେ ଏପରି ସ୍ଥାନ କେବେ ଭାଗ୍ୟଫଳେ
ଉପଶମେ କ୍ଷଣେ ଭବ ଦାରୁଣ କଷଣ ।

ସଦ୍ୟସ୍ନାତ ଏଥୁ ଛବି ଶୁଦ୍ଧ ଘନଜଳେ
ଅସ୍ତମିତ ରବି କରେ ଦ୍ୱିଗୁଣ ଉଲ୍ଲାସେ

ବିରାଜେ ଶ୍ୟାମଳ ଶସ୍ୟ କ୍ଷେତ୍ର ତଟପାଶେ,
ବିଶଦ ସଜଳ ନଦୀ ବକ୍ଷେ ପ୍ରତିଫଳେ ।

ଶଇଳ ଶିଖରେ ଶୋଭେ ଶୁଭ୍ର ଶିବାଳୟେ,
ସମଗ୍ର ଶ୍ୟାମଳ ଦୃଶ୍ୟ ମଧ୍ୟେ କି ରୁଚିର !

ନୀଳ ମେଘେ ଯଥା ପୂର୍ଣ୍ଣ ଚନ୍ଦ୍ରମା ଉଦୟ
ଶିବ ସଙ୍ଗବଶେ ଶାନ୍ତି ଅଧିକ ଗମ୍ଭୀର ।

ଦେଖ ଦେଖ ବନ୍ଧୁଗଣ ! ପୂରାଇ ନୟନ,
ଏ ଯୋଗ ଜୀବନେ ଘଟେ ଅତି ଅଳ୍ପକ୍ଷଣ ।



# ଗ୍ରୀଷ୍ମେ ଝୁଣ୍ଟାଗଛ

ହେ ତରୁବର ! କାହିଁ ସେ କଳେବର ?
ଅଳପଦାନ ତଳେ ଏଡ଼େ ସୁନ୍ଦର !

ମନୋଜ୍ଞ କଶଳୟଦଳେ ଶୋଭିତ,
ମୋହିତ କରୁଥିଲୁ ଭାବୁକ ଚିତ୍ତ ।

ନବୀନ ଯୁବାଜନ ସମ ପ୍ରଫୁଲ୍ଲ,
ଦିଶୁଥିଲୁ ରେ ଦ୍ରୁମ କେଡ଼େ ମଞ୍ଜୁଳ !

ଏବେ କିପାଇଁ ତେଜ ସେ ଦିବ୍ୟ ଦେହ,
ଏ ଘନଘାନ ବେଶେ କରୁଛୁ ସ୍ନେହ ?

ଶୁଷ୍କ ଶାଖାରେ ସ୍ଥିରେ ହୋଇଛୁ ଛିଡ଼ା,
ପୂର୍ବପର ପବନେ ନାହିଁ ତୋ ବ୍ରୀଡ଼ା ।

କଙ୍କାଳ ମାତ୍ର ଅଛି ତୋ ଅବଶିଷ୍ଟ,
ନ ଜାଣଇ ହେଲୁ କି ଦଶା ଭ୍ରଷ୍ଟ ।

ନିଦାରୁଣ ନିଦାଘ ହୋଇ ଉଦାର,
କଲା କପୁସ ବପୁ ଦେଲା କି ସାର ?

ତୋ ପୂର୍ବତନୁଶୋଭା ସୁମରି ମନେ,
ଏ ରୂପ ଦେଖି ଅଶ୍ରୁ ଆସେ ନୟନେ;

କ୍ଷଣ-ଭଙ୍ଗୁର ପିନା ନର ଯୌବନ
ପ୍ରସ୍ଫୁଟିତ କୁସୁମେ ବାସ ଯେସନ ।

ଦେଖିଣ ଭବେ ଜନ୍ତ ଏପରି ଗତି,
ଆଚରେ ଯୁବାଜନ କେତେ ଅନୀତି ।

ହେ ବୃକ୍ଷରାଜ ! କଲି ଯେଉଁ ବପୁର,
ନୁହେ ତୋର ସେପରି ହୀନ ଆତୁର ।

ତୋ ଶୁବାକାଳେ ସାଧି ପ୍ରାଣୀ-ମଙ୍ଗଳ,
କରିଛୁ ରେ ପାଦପ ! ଜନ୍ମ ସଫଳ ।

ଦେଇ କୋମଳ ଛାୟା ସୁପକ୍ୱ ଫଳ,
କରିଛୁ କେତେ ଦଗ୍ଧ ପ୍ରାଣ ଶୀତଳ ।

କାଟିଲୁ ଯୁବାକାଳ ପରୋପକାରେ,
ଧନ୍ୟ ଧନ୍ୟ ଜୀବନ ତୋର ସଂସାରେ !

ଏବେ ମାୟା ମମତା ସବୁ ପରିହରି,
ମାରବେ ଏକ ଲକ୍ଷ୍ୟେ ଭଜୁ ଶ୍ରୀହରି ।

ଧରିଣ ଯତି-ଦୀକ୍ଷା ସାଧୁଛୁ ଯୋଗ,
ପରମବ୍ରହ୍ମେ ଚିତ୍ତ କରି ସଂଯୋଗ ।

ପ୍ରଖର ରବି-କରେ ଟେକିଛୁ ମଥା,
ତପ-ପ୍ରଭାବେ ହୃଦେ ନ ଲାଗେ ବ୍ୟଥା ।

ଚଉପାଶେ ଦାବାଗ୍ନି ପ୍ରଚଣ୍ଡେ ଜଳେ,
ଅନଳକୁଣ୍ଡ ଯଥା ତପସ୍ୟା ସ୍ଥଳେ ।

କଳ୍ପଯୋଗୀ ପରାୟେ ଦିଶେ ଶରୀର,
ରହିଛି ଅସ୍ଥି-ଚର୍ମ, ନାହିଁ ରୁଧିର ।

ଦେଖିଣ ଏ ନୀରସ ପ୍ରସ୍ତର ତନୁ,
ଭବ୍ୟ ଉନ୍ନତ ଭାବ ଉପୁଜେ ମନୁ ।

ପଡ଼ଇ ସ୍ମୃତି-ପଥେ ଅତୀତ କଥା,
ଭାରତର ଗୌରବ ଆଶ୍ରମ ପ୍ରଥା ।

ସମାଜ ସୁରକ୍ଷଣେ ଅପୂର୍ବ ବିଧି,
କାହିଁ ଗଲ ଏବେ ସେ ଅମୂଲ୍ୟ ନିଧି ।

ମୁକତି ଲଭେ ସେହି ଧର୍ମ-ନିଶ୍ରେଣି
ସତେ କି କେବେ ଫେରି ଆସିବ ପୁଣି ?

ଗୃହସ୍ଥାଶ୍ରମ ଏକା ଏ ଯୁଗେ ସାର,
ନ ଛୁଟେ ମଲପାଏ ମାୟା-ସଂସାର ।

ଗୃହସ୍ଥାଶ୍ରମେ ପୁଣି ନାହିଁ ସେ ନୀତି,
ଧର୍ମ-କର୍ମ-ସାଧନେ ସରଳ ପ୍ରୀତି ।

ସ୍ୱାର୍ଥସାଧନେ ରତ ସର୍ବେ ନରତେ,
କେତେ କାଳ ଏପରି ହେବ ଭାରତେ ।



# ଗୋଟିଏ କାଙ୍କଣ ଗଛ

ନବ ଦୂର୍ବାଦଳ ଶେଯ ଧରାଧାତ୍ରୀକୋଳେ
ବଢ଼ିଥିଲୁ ତେଜପୁଞ୍ଜେ ଆହା କେଡେ ହେଳେ !
ଦେଲା ପ୍ରକୃତି-ଜନନୀ ଲେଡ଼୍ ଯେବେ ଯାହା,
ନ ଥିଲା ତୋର ଏ ଭବେ କେହି ଆଉ ସାହା ।
ନଭଶିଖେ ଲୋଟୁଥିଲୁ ସୁଖେ ନମ୍ରଦେଶେ,
ସ୍ୱାଧୀନତାବଶେ ଶୋଭୁଥିଲୁ ବୃକ୍ଷବେଶେ ।
ଧରୁ ଗଣି ଗଣି ଫଳ ଗଲା ସବୁ ନାଶ,
ତଳେହେଲେ ମନେ ତୋର ନ ହୁଅଇ ତ୍ରାସ ।
କଲୁ ଫଳ-ଅଭିଳାଷୀ ଦୂରଣସ୍ଥ ନର;
ଲଗାନ୍ତେ ତୋ ଦସ୍ୟ ଶୁଦ୍ଧ କଳେବରେ କର,
ଝାଉଁଳ ପଡ଼ିଲୁ ସିନା ପାପର ପରଶେ !
ସ୍ୱାଧୀନତା ହରାଇଣ ରହିଛୁ ହରଷେ !
ରଞ୍ଜା ଚଞ୍ଚା ହେଲା ତୋର ଅଙ୍ଗବୃଦ୍ଧି ଲାଗି
କହ ତ ସଂଯୋଗେ କମ୍ପା ହେଲୁ ଦୁଃଖଭାଗୀ ?
ଅନ୍ୟର ଆଶ୍ରୟ ପାଇ ଜଗେ ଶିର ଟେକ,
ବଡ଼ପଣ ଅଭିଳାଷେ ନର ଅବିବେକୀ ।
ସ୍ୱାଧୀନତାପ୍ରିୟେ ! ଧର ଅପର ଚରଣ,
ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ ।



# କୋକିଳ

ମଧ୍ୟାହ୍ନ ତପନ-କର ପ୍ରଚଣ୍ଡ ପ୍ରଖର
ଅବସନ୍ନ ତରୁଲତା ପଶୁ-ପକ୍ଷୀ-ନର,
ଏବେ ଶ୍ରମବାଧା ପାଇ
ପ୍ରବେଶିଲି ଛାୟାପ୍ରଦ ଘନ ବନେ ଯାଇ ।୧।

ଆହା କେଡ଼େ ଶାନ୍ତମୟ ଏହୁ ବନସ୍ଥଳୀ !
ଶୁଭୁନାହିଁ ସୁଦ୍ଧା ଏଥି ବିହଙ୍ଗ-କାକଳୀ,
ବହେ ଭାର୍ଗବୀ ସୁନ୍ଦରୀ,
ନୀରବ ଗମ୍ଭୀରେ ନିଜ ଗତି ଅନୁସରି ।୨।

ସୁଶ୍ୟାମଳ ତୃଣବାସେ ଆଚ୍ଛାଦିତ ମହୀ
ସୁଶୀତଳ ସମୀରଣ ବହେ ରହି ରହି
ଆହା କିଏ ସେ ଏକାଳେ,
ମୋ ଶ୍ରୁତିପଥରେ ସୁଧାମୟ ବାଣୀ ଢାଳେ ।୩।

ସଂସାର-ସମରେ ଦଗ୍ଧ ମୋ ବ୍ୟସ୍ତ ଜୀବନ
ପରମ ଉଲ୍ଲାସ-ରସେ ହେଲା ନିମଗନ,
ଆହା ସେ ମଧୁର ଗୀତ
ମୋ ତାପିତ ହୃଦେ ଜାତ କଲା ଦିବ୍ୟ ପ୍ରୀତ ।୪।

ନିରେଖିଲା ଚଉଦିଗେ ସାବଧାନ ନେତ୍ରେ
କାହାକୁ ଦେଖିଲା ନାହିଁ ଡାକେ କିବା ପତ୍ରେ
ବହେ ସେ ସଙ୍ଗୀତ-ସୁଧା
ପୁଲକ ଉଠେ କି ସତେ ନିଖିଳ ବସୁଧା ।୫।

ମନେ ବିଚାରିଲା ଶାନ୍ତିଦେବୀ ରାଜପଣେ
କରନ୍ତି ସଙ୍ଗୀତ ସ୍ୱର୍ଗ-ଅପସରାଗଣେ
ରହି ଅଦୃଶ୍ୟ ଗୋପନେ
ବୁଝିବେ ଏହାର ଅର୍ଥ କାହୁଁ ମର୍ତ୍ତ୍ୟଜନେ ?୬।

କ୍ଷୁଦ୍ର ପକ୍ଷୀ ଏକ ତରୁଶାଖାରୁ ଏକାଳେ
ଉଡି ପଶିଗଲା ଲତାକୁଞ୍ଜ ଅନ୍ତରାଳେ,
ବାଣୀସ୍ରୋତ ପରମାର
ଏବେ ତାହା ପଛେ ପଛେ ବହିଗଲା ପର !୭।

ସେ ଲତାମଣ୍ଡପୁ ପୁଣି ବାହାରିଲା ତାନ
ଜାଣିଲା ସେ କ୍ଷୁଦ୍ରପକ୍ଷୀ କରୁଅଛି ଗାନ,
ଧନ୍ୟ ଧନ୍ୟରେ ବିହଙ୍ଗ,
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ? ୮।

ଗୁଣ ଥିଲେ ରୂପରେ କି ଅଛୁ ପ୍ରୟୋଜନ ?
ରୂପ ଅଟଇ କେବଳ ବାହ୍ୟ ଆଭରଣ,
ଧନ୍ୟ ଧନ୍ୟ ରେ ବିହଙ୍ଗ
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ? । ୯ ।

ଭାରତ ପ୍ରାଚୀନ ଆର୍ଯ୍ୟ ମୁନିଗଣ ପରି
ମହାଲକ୍ଷ୍ୟ ସାଧୁ ଗୁପ୍ତ ସାଧୁବ୍ରତ ଧରି,
ତେଣୁ ତେଜି ଆଡ଼ମ୍ବର,
ଉଚ୍ଚାରୁ ନିଭୃତେ ବସି ଏ ମହାମନ୍ତ୍ର । ୧୦ ।

ସେ ମହାପୁରୁଷେ ଯଥା ବସି ବନସ୍ଥଳେ
ପ୍ରକାଶିଲେ ଦିବ୍ୟତତ୍ତ୍ୱ ଧରଣୀ-ମଣ୍ଡଳେ,
ତଥା କରୁ ଦିବ୍ୟନାଦ
ଶୁଣି ଯାହା ଭୁଟେ ନର-ହୃଦ ଅବସାଦ । ୧୧ ।

ଏ ଯୁଗର ପ୍ରାଣୀ ନୋହୁ ଜାଣିଲି ରେ ପକ୍ଷୀ ।
ପ୍ରାଚୀନ ମହତ ଭାବ ଅଛୁ ତେଣୁ ରକ୍ଷି,
ନାହିଁ ଟିକେ ଅହଙ୍କାର,
ତୋ ନିବାସ ଉପଯୋଗୀ ନୁହେ ଏ ସଂସାର । ୧୨ ।

କେଉଁ କ୍ଷୁଦ୍ର ଦେହେ କେଉଁ ଗୁରୁତର ଭାବ
ଲଗଇ ଆଶ୍ଚର୍ଯ୍ୟ ମୋତେ ଦେଖି ତୋ ପ୍ରଭାବ,
ଆରେ ପ୍ରବୀଣ ବିହଙ୍ଗ,
ଲଭିବାକୁ ମୋର ଇଚ୍ଛା ତୋର ସାଧୁସଙ୍ଗ । ୧୩ ।

ଅଜ୍ଞାନ ତମିରେ ଅନ୍ଧ ଭାରତ ସନ୍ତାନ
ହରାଇଛନ୍ତି ଜାତୀୟ ମାନ ଅଭିମାନ
ଆରେ ପ୍ରିୟ ପକ୍ଷୀବର,
ଗାଅନାହିଁ ପୂର୍ବସ୍ମୃତି ହୃଦରେ ଅନ୍ତର । ୧୪ ।

ଜାଣିବ କି ହେ ପାଠକ ଏ ବିହଙ୍ଗ ନାମ,
ଜାଣିବ କି କାହିଁ ଏହା ସୁଖମୟ ଧାମ ?
ନାମ ଏହାର କୋକିଳ,
ବସନ୍ତ-ରାଜ୍ୟ-ନିବାସୀ 'ସୁରକ୍ଷଣଶୀଳ' । ୧୫ ।



* ପ୍ରାଚୀନ ଉଦ୍‌ବନ୍ଧ ସକଳର ରକ୍ଷକ ।

# ଅନାଥା କଳିକା

ନବୀନ ମଲ୍ଲିକା ଲତୁ କୋମଳ କଳିକା,
ପ୍ରକୃତି-ଜନନୀ କୋଳେ ସରଳା ବାଳିକା,
ଭେଟିନାହିଁ ଭବ-ଦୁଃଖ ଝଡ଼ ଝଞ୍ଜାବାତ
ଅତିକ୍ରମିନାହିଁ ବାଳା ଜୀବନ-ପ୍ରଭାତ,
ତରୁଣ ଛଟକ ଭାବ ଅପାଙ୍ଗ-ଚହାଣୀ,
ଚତୁର ସୁହାସ ଆଜ ନାହିଁ କଛି ଜାଣି ।
ଦବେଟି ହସଇ ଶୁଣି ବିହଙ୍ଗମ-ଗୀତ,
ବୃନ୍ତାସନେ ଧୀରେ ଧୀରେ ଦୋଳାଏ ମରୁତ ।
ସ୍ୱର୍ଗୀୟ ସରଳ ଭାବ ପବନ ମାଧୁରୀ,
ଏ ନବ କୋରକେ ଅଛି ଅପ୍ରକାଶ୍ୟ ପୂର ।
ଶୈଶବ ସମୟ ତାର ଅଜ୍ଞାନ ସମୟ
ଏ କାଳେ ଭ୍ରମର ସଙ୍ଗେ ହେଲା ପରିଚୟ ।
ପର ପୁରେ ପର କନ୍ୟା ହୁଏ କମ୍ପା ବନ୍ଦୀ,
ସାମାନ୍ୟ କଳିକା କାହୁଁ ଜାଣିବ ସେ ସନ୍ଧି ?

ଯୌବନ ସରସେ ନାହିଁ ଲାବଣ୍ୟ-ତରଙ୍ଗ
ସରସ ବସନ୍ତେ ସ୍ଫୁଟ ହୋଇନାହିଁ ଅଙ୍ଗ,
ଅନ୍ତର-ନିହିତ ମଧୁ ଦେଇନାହିଁ ଦେଖା,
ସୁବର୍ଣ୍ଣ ପଦରେ ଧରା ହୋଇନାହିଁ ଲେଖା,
ପ୍ରଣୟୀ ଭ୍ରମର ତେଣୁ କେବେ କେବେ ଆସେ
ଭ୍ରମଇ ଏକାନ୍ତେ ବାଳକଳିକା ସକାଶେ ।
ଗୁଣୁ ଗୁଣୁ ସ୍ୱରେ ଅତି ଅପ୍ରକଟ ଭାନେ
ନିତି ମିତି ଉପଦେଶ କହଇ ତା କାନେ ।
ତାହାର ଶୈଶବ ତନ୍ଦ୍ରା କେବେ ନ ପରଶେ,
ଭବିଷ୍ୟର ସୁଖ ଚିତ୍ର ଅଙ୍କଇ ମାନସେ;
କରେ ଅନୁକ୍ଷଣ ସ୍ୱର୍ଗ ପ୍ରମୋଦ କଳ୍ପନା,
ନ ଜାଣି ସମୟେ ହେବ ଆସି କି ଘଟନା ।
ଆହା କି ବିଚିତ୍ର ଭବେ ବିଧାତା ବିଶ୍ୱର,
ଆହ୍ଲାଦ ସଙ୍ଗତେ ଥାଏ କଷଣ ଅପାର ।
ବସନ୍ତ ପ୍ରଦୋଷେ ଯେବେ ଫୁଟିଲା ସେ କଳି,
ପାନ୍ଥ ପଦେ ଦଳିହୋଇ ନାଶ ଗଲା କଳି ।
ଫୁଲ ପ୍ରକଟିତ ବାସେ ପ୍ରୟୋଜନ କିସ ?
ହୋଇଲା ସରସ ମଧୁ ଏବେ ସିନା ବିଷ !
ମଧୁ ପିଇବାକୁ ଏଥି ନାହିଁ ତ ମଧୁପ,
ରସିକ ନ ଥିଲେ କିଏ ଆଦରେ ଏ ରୂପ ?
ବନ-ନିବାସିନୀ ମଲ୍ଲୀ ଏ ନବ ଯୌବନେ
ଏକାକିନୀ ଅନାଇଛି ଅନନ୍ତ ଗଗନେ ।

ଝରବେ ଶିଶିର ଅଶ୍ରୁ ଗଗନ ନୟନୁଁ,
କମ୍ପେ ବିଧୁରର ଆହା ନିରାଶ୍ରୟ ତନୁ ।
ଶୁଣନ୍ତେ ବାନ୍ଧବ କି ସେ କରଇ ବିଳାପ,
ପାଷାଣ ମାନବ-ହୃଦ ଜାଣେ କି ସେ ତାପ ?
ସହୃଦୟେ କେହି ଥରେ ନ ପକାଏ ଦୃଷ୍ଟି,
ଧରାଧାମେ ଅକାରଣ ଦେଲ କି ତା ସୃଷ୍ଟି ?
ବୃଥା ଶୋକ ପରିହର ମଲ୍ଲିକା-ସୁନ୍ଦରୀ !
ଧୈର୍ଯ୍ୟଧର ଏବେ ତୁମ ଅଦୃଷ୍ଟ ସୁମରି ।
ସୁମନ ସମାଜ ହୃଦେ ନାହିଁ ଦୟା ଲେଶ,
ନ ଶୁଣନ୍ତି ତୋ ବିଳାପ ନ ଜାଣନ୍ତି କ୍ଲେଶ ।
ପ୍ରଣୟର ସ୍ଥାନ ନୁହେ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣ ମନେ,
ଝଟଣେ ଏଥି ରହି ଚଳ ଅମର ଭୁବନେ ।



# ଶିବରାତ୍ରି

କରିଅଛୁ ଉପବାସ ପଜିତ ଶଙ୍କର,
ଜାଗର ଜାଳିଣ ହେଉଛି ନିଶି ଉଜାଗର ?

କାହିଁଗଲେ ଦେଖିବି ସେ ସତ୍ୟ ଶିବ ରୂପ,
ନାଶିବ କି ପାପ ଜାଳ ଘୋର ତମ ସ୍ତୂପ ?

ଉଜାଗର ରହିବାକୁ କାହିଁ ମୋର ବଳ
କି ଦ୍ରବ୍ୟେ ପୂଜିବି ଅବା ସେ ପଦଯୁଗଳ ?

ଏ ଜଡ଼ ଜଗତେ କାହିଁ ଚିଦାନନ୍ଦ ତନୁ,
ବାହ୍ୟାଲୋକେ ଅନ୍ଧକାର ଯିବ କାହିଁ ମନୁ ?

ସ୍ୱତକର ଉଜାଗରେ କିସ ପ୍ରୟୋଜନ ?
ନିଦ୍ରାବିମୋହିତ ମୋର ସମସ୍ତ ଜୀବନ !

କାହିଁ ପାରିଜାତ କାହିଁ ଜାହ୍ନବୀର ଜଳ,
କାହିଁ ବା ଅମର ଧାମ ହେମ ଶତଦଳ,

ଉପକରଣର ଲେଶ ନାହିଁ ଯେବେ ଭବେ,
ବ୍ରତ ଅନୁଷ୍ଠାନ କାହୁଁ କରିବେ ମାନବେ ?

ସନ୍ଦେହେ ବ୍ୟାକୁଳ ଏ ମୋ ଦୁର୍ବଳ ପରାଣ,
ନିରାଶ ବିଷାଦେ ଏବେ ମଗ୍ନ ମୋର ଜ୍ଞାନ,

ଅଶାନ୍ତ ଆବେଗରେ ହୃଦ ହୁଏ ଆଲୋଡ଼ିତ,
ଘୋର ଅବିଶ୍ୱାସ ତମେ ଚିତ୍ତ ବିଜଡ଼ିତ ।

ପ୍ରକୃତିର ସୁରୁବେଶ ନ ଦେଖେ ନୟନ,
ଧୂମ ମରୁ ସମ ଲାଗେ ସମସ୍ତ ଭୁବନ ।

ଅନ୍ତରୁ ନୀରବେ ଏବେ ହେଲା ଦିବ୍ୟବାଣୀ,
କିମ୍ପା ଅବିଶ୍ୱାସେ ଜଡ଼ ହେଉ ମୂଢ଼ ପ୍ରାଣୀ ?

ଜଡ଼ ବୋଲି ଯାହା ତୋତେ ହୁଅଇ ପ୍ରତୀତ,
ନ ଜାଣୁ ତହିଁ କି ଶକ୍ତି ରହିଛି ନିହିତ !

ଶକ୍ତି ବିନା ସୃଷ୍ଟି କେବେ ନୁହଇ ସମ୍ଭବ,
ତେଣୁ ସଦା ଶିବମୟ ଦେଖ ସର୍ବ ଭବ ।

ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ,
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ,

ହୃଦ-କପିଳାସେ ତୋର ବସେ ପ୍ରେମ-ଝର
ସଙ୍ଗେ କରିଛନ୍ତି ତହିଁ ସ୍ୱୟମ୍ଭୁ ଶଙ୍କର;
ଶୁଚିମନ୍ତ ହୋଇ ନିତି ଜ୍ଞାନ ଦୀପ ଜାଳି,
ଶୁଦ୍ଧ-ଭକ୍ତି-ରସ ବିନ୍ଦୁ ସେ ଶ୍ରୀପଦେ ଢାଳି,

ଉଜାଗର ରହି କର ତାଙ୍କ ପ୍ରିୟ କର୍ମ,
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି-ଧର୍ମ ।

ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ହୁଡ଼ ପଥ ହେ ସ୍ୱରଗ-ଯାତ୍ରୀ !



## ପଥିକ

ମୁଁ ତ ଚାଲୁଅଛୁ ମୋ କର୍ମ ଆଦରି
କିଏ ମୋତେ ଥରେ ଥରେ,
ରହ ରହ କ୍ଷଣେ ପଥିକ ବୋଲିଣ
ଆଶ୍ୱାସି ଡାକେ ସାଦରେ !

ଏଣିକି ତେଣିକି ଚାହିଁଇ ନଦେଖି
କେହି କାହିଁ ନ ଦିଶଇ,
ମୁହୂର୍ତ୍ତକ ଅନ୍ତେ ପୁଣି ସେହି ମତେ
କିଏ ସେ କାହୁଁ ଭାଷଇ ।

ମୁଁ ତ ଚାଲୁଅଛୁ ମୋ କର୍ମ ଆଦରି
କିଏ ମଧ୍ୟେ ଥରେ ଥରେ,
ଅତି ମନୋରମା ପୀରତି-ପ୍ରତିମା
ଭାସି ହୁଏ ମୋ ପଥରେ !

କାହିଁ କେବେ ପରା ଏ ରୂପ-ମାଧୁରୀ
ଆସ୍ୱାଦ ଚୋଷୁଛି ପ୍ରାଣ
ଭାବୁଁ ଏହିପରି ପଲକେ ସେ ଶିରୀ
ହୁଏ କାହିଁ ଅନ୍ତର୍ଦ୍ଧାନ ।

ମୋ ପଥ ତ ମରୁ, ନାହିଁ ଲତା ତରୁ,
ନାହିଁ ବାୟୁ ନାହିଁ ଜଳ;
ତେବେ ବେଳେ ବେଳେ କାହୁଁ ବହିଆସେ
ଏ ଶୀତଳ ପରିମଳ ?

ଏ ଗନ୍ଧ କାହାର ଅତି ଚମତ୍କାର
ନିମିଷେ ହରୁଛି ମନ,
ନାହିଁ ସେ ସୁବାସ ନିଶ୍ୱାସ ପ୍ରଶ୍ୱାସ
ନିରୋଧେ ଝଞ୍ଜା ପବନ

କାହୁଁ ଏ ଆଶ୍ୱାସ, କାହୁଁ ଏ ସୁବାସ,
କାହାର ଏ ରୂପକାନ୍ତି,
ଏ ବିଜନ ସ୍ଥଳେ ପ୍ରାଣେ ଏକାବେଳେ
ଦିଏ ସ୍ନିଗ୍ଧ ଶାନ୍ତି ଭ୍ରାନ୍ତି ।

ଅସରନ୍ତି ପାଠ ଏ ଦୁର୍ଗମ ବାଟ
ଚାହିଁଲେ ବୁଡ଼େ ଚେତନା
କିଏ ବା ବଞ୍ଚନ୍ତା ନ ଲଭିଲେ ଏହି
ସ୍ୱର୍ଗୀୟ ସ୍ନେହ ସାନ୍ତ୍ୱନା !

ନିରସ ଅନ୍ତରେ ନିଜନ ପ୍ରାନ୍ତରେ
କିଏ ଧରନ୍ତା ଜୀବନ,
ଯେବେ ମୂର୍ତ୍ତିମନ୍ତ ପୂର୍ବ ପ୍ରୀତି ସ୍ମୃତି
ନ ଦିଅନ୍ତା ଦରଶନ ?

ପବିତ୍ର ବାସନା କରନ୍ତେ ପ୍ରେରଣା
ହୃଦେ ଆସେ ନବ ବଳ;
କର୍ମପଥ ଶ୍ରମ ହରିବାକୁ ଆହା
କି ଔଷଧ କଉଶଳ !

ଦିବ୍ୟ ଆଶ୍ୱାସନା ପବିତ୍ର ବାସନା
ଶ୍ରଦ୍ଧା ସୁଧା ସ୍ନେହାନନା,
କର୍ମ ମହାପଥେ କରୁଛନ୍ତି ପାନ୍ଥେ
ସ୍ଥାନେ ସ୍ଥାନେ ଅଭ୍ୟର୍ଥନା ।

ତେବେ କର୍ମପଥେ ବ୍ୟର୍ଥ ମନୋରଥେ
ଘାର ମୁଁ ହେବ କିପାଇଁ ?
ଏକ୍ଷ କିଏ କହେ କାହ୍ୟ କି ଅନ୍ତରେ
ଆଶ୍ୱାସିଣ 'ନାହିଁ, ନାହିଁ'



# ଗିରି-ଶିଖେ ଲଗ୍ନ ରହି ଚାଲିବି ମୁକର

ଯେତେ ଦୂର ଯାଏ ଭାଳି
ଚଉପାଶେ ଖାଲି ବାଲି,
ନାହିଁ କାହିଁ ଶ୍ୟାମଶସ୍ୟ ନବଦୁର୍ବାଦଳ,
ନାହିଁ ଲତା ନାହିଁ ତରୁ,
କେବଳ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଳ ଫୁଲ ଅବା ଫଳ ।

ସୁନୀଳ ସୁନ୍ଦର ଗିରି
ଧରି ଅନୁପମ ଶିରୀ
ଦିଶୁଥିଲା ଅଳ୍ପ ଦୂରେ ଚକ୍ରବାଳ ମୂଳେ,
ଉଜ୍ଜ୍ୱଳ ତାରକାରାଶି
ଦିବ୍ୟ ଆଲୋକେ ଉଦ୍ଭାସି
ନିରନ୍ତର ଶୋଭୁଥିଲା ତାର ସ୍ୱଚ୍ଛ ଚୂଳେ ।

ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ
ହେବ ବୋଲି ଏତେ ଦୂର ଏ ବିଷମ ପଥ,

କ୍ରମେ ବଢ଼ିଯାଏ କାଳ
କ୍ରମେ ଘୁଞ୍ଚେ ଚକ୍ରବାଳ
ଶିଥିଳ ସେଁ କରେ ଚଳେ ମୋର ମନୋରଥ ।

ଆଜ କେତେଦିନ ଅନ୍ତେ
ଏ ଦୁସ୍ତର ବାଳିବନ୍ତେ
ନ ଚଳି ରହିବ ପାଦ ପିଡା ଥକା ମାରି
ନ ଦେଖିବ ଜନ ଆଖି,
ଘୋର ପନ୍ଥାରେ ଏକାକୀ
ବୁଲିଯିବ ମନେ ପ୍ରାଣ ବୃଥା ଘାରି ଘାରି

ଗଲେ ଟଳେ ଯାଉ ଜୀବ
ଯାହା ହେବ ଦେଖାଯିବ
ହେଲେ ହେଉ ଯେତେ ଦୂର ଏ ଦୁର୍ଗମ ପଥ,
କହ କେଉଁ ମୂଢ଼ ଜନ
କରି ଥରେ ବିଲୋକନ
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?

ଅବସନ୍ନ ହେଲେ କାୟା
ଆଶ୍ରିତ ଏ ଗିରି ଗୁମ୍ଫା,
ବାଳିଶେଯେ ଶୋଇବି ଯାଇ ଅନେ ବାଟ,

ତାରକିତ ଗିରି ଚୂଡ଼େ
ଲବେଶି ନୟନ ଦୂରେ
ଫେଡ଼ିବି ପରମ ସୁଖେ ହୃଦୟ-କବାଟ ।

## ଗିରି-ଶିଖେ ଲକ୍ଷ୍ୟ ରଖି ସ୍ୱଳବ ମୁକର

ସୁଦୂର ସାଗର-ଗୀତ
ଶ୍ରବଣେ ସ୍ୱର୍ଗୀୟ ପ୍ରୀତ
ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ;

ଅନୁସରି ସେହି ଗାନ
କରି ମନେ ଏକଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।

ଦେଖି ଚନ୍ଦ୍ର-ସ୍ୱଚ୍ଛ ଅଙ୍ଗ
ଲଭିବାକୁ ତାରି ସଙ୍ଗ
ଧାଇଁ ଧାଇଁ ପଥେ ଶଶା ଛୁଟିଲା ପବଣ;

କେତେ ଦୂରେ ନିଶାପତ
କାହିଁ ବା ଶଶକ ଗତ
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ !

ଶତ ଶଶୀ କର ଶୋଭା
କି ବିଚିତ୍ର ମନୋଲୋଭା
କପରି ଏହାର ଆଶା ଛୁଟିବ ମୁଁ ନର,

ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରି-ଶିଖେ ଲକ୍ଷ୍ୟ ରଖି ସ୍ୱଳବ ମୁକର



# ନୀରବ

( ୧ )

ନୀରବେ ପ୍ରସରେ କ୍ଷଣେ ଦିବ୍ୟ ଜ୍ୟୋତି ଧାର,
ନୀରବେ ଆକାଶେ ଉଦେ ରବି-ଶଶୀ-ତାର,
ନୀରବେ ବଢ଼ଇ ତରୁଲତା ମହୀଧର,
ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତର ।

( ୨ )

ସଦା-କାଳ-ପାରାବାର-ଅନନ୍ତ ଗରଭେ
ମିଶଇ ସମସ୍ତ-ସ୍ରୋତ ସତତ ନୀରବେ,
ନୀରବେ ଜଗତ ଭରେ ନିଜ କକ୍ଷେ ଗତି,
ନୀରବ ନିହିତ ବିଶ୍ୱ ନିଗୂଢ଼ ଶକତି ।

( ୩ )

ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଛଳ ଛଳ,
ନୀରବେ ସରସୀ-କକ୍ଷେ ହସେ ଶତଦଳ,
ନୀରବେ ନିରାଶହୃଦେ ବହେ ଦୀର୍ଘଶ୍ୱାସ,
ସୁଖେ ଦୁଃଖେ ପରାଣର ନୀରବ ଆଶ୍ୱାସ ।

( ୪ )

ତେବେ କିମ୍ପା ଚଣ୍ଡବେଗେ ଚପଳ ଝଙ୍କାର,
କିମ୍ପାଇଁ ମାନବ କରେ ଏତେ ଅଡମ୍ବର ?
ଚାହଁ ଅନ୍ତର୍ଦୃଷ୍ଟେ, ଚାହଁ ଆପଣା ଅନ୍ତର,
ଶୁଣି ଶିଖ ସାଧ ସଦା ନୀରବ ମନ୍ତର ।



# ନିତ୍ୟଧାମ ନୀଳାଚଳ

ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟରାସ;
ବୋଲି ହରି ହରି
କେ ପ୍ରେମ ଭିଖାରି
ଚରଣ-ଧୂଳିକେ ତେଜିବ ନିଶ୍ୱାସ ? ।୧

ସେଠି, ନାହିଁ ଯାର ନିଜ ପର ଜ୍ଞାନ,
ଚାଏ ନିଛ ଯାର ସ୍ନେହ ସନମାନ
ବିଶ୍ୱ ଜନେ ଯା'ର
ଆହାର ବିହାର
କରେ ବିଶ୍ୱ ହିତେ ଯେ ଜୀବନ ଦାନ ।୨।

ସେଠି, କରେ ଯେତୁ ସତ୍ୟ ଆଚରଣ,
ସତ୍ୟ ଆରାଧନା, ସତ୍ୟ ସମ୍ଭାଷଣ,
ଭିତର ବାହାର
ଯାର ସତ୍ୟ ସାର,
ସୁଖେ ଦୁଃଖେ ସଦା ସତ୍ୟ ଯା'ଶରଣ ।୩।

ନାହିଁ ଜାତି ଭେଦ, ନାହିଁ ଧର୍ମଭେଦ,
ସାମ୍ୟମୈତ୍ର୍ୟମନ୍ତ୍ର ଗାଏ ଯାର ବେଦ;
କେ କରିବ ଭବେ
ଦେବତା ମାନବେ,
ନୀଳାଚଳେ ତାର ପ୍ରବେଶ ନିଷେଧ ? ।୪।

# ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ

(ଜଣେ ଆଜୀବନ ସହକର୍ମୀଙ୍କ ପ୍ରତି)

କାହା'ଗେ ଗାଇବ ପରାଣ-ସଙ୍ଗୀତ
କା ପାଶେ ବାଇବ ଅନ୍ତର-ବୀଣା,
କା କାନେ କହିବ ମରମ ବେଦନା
ମନକଥା ମନେ ରହିଲା ଲୀନା !

ଜୀବନ ପ୍ରଭାତେ ଆପଣାର ବୋଲି
କରିଥିଲି ଯାକୁ ପରାଣ-ସଖା,
ସେ ତ ନ ଜାଣିଲା ମୋ ଅନ୍ତର ଗତି
ଦେଲା ମୋ ପରାଣେ ଦାରୁଣ ଧକ୍କା ।

ଯା ମୁଖ ଅନାଇ ଅନ୍ତିମ ସଙ୍କେତ
ଦେଇ ଲଭିଥାନ୍ତି ଶେଷ ସାନ୍ତ୍ୱନା,
ମୋ ସ୍ନେହ-ନେତ୍ରକେ ସତ୍ୟ ସରଳତା
ନ ଦେଖି ଦେଖେ ସେ ମିଛ ଛଳନା ।

ଯାର ଗଉରବେ ମୋ ଭାଗ୍ୟ ଉଭବ
ଯାର କୃତିତ୍ୱେ ଏ ପ୍ରାଣ ଉଲ୍ଲାସେ,
ମୋର ଉପଯୋଗେ ସେ ଯେବେ କାତର
ଏ ଜୀବନ ଆଜ କି ସୁଖ ଆଶେ ?

ଜୀବନ ଓ ଖାଲି ନିରାଶାର ବାଲି,
ମରୁ-ମରୀଚିକା ଯେନେହ ପ୍ରୀତି,
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଚି ନିତି ?

ପ୍ରେମ ପଥ ସତେ ସନ୍ତୁ ସୁଖ ପାଏ
ପ୍ରେମ ନ ଜାଣଇ କେବେ ଶୋଚନା,
ପ୍ରିୟଜନେ ନୂତନ ପ୍ରେମିକ ସମ୍ମୁଖ
ହେଲେ ହେଜ ଯେମନ୍ତ ଗୁରୁ ଗଞ୍ଜନା ।

ମୋ ପ୍ରେମ କି ସତେ କେବଳ ଛଳନା
ଲୋଡ଼େ ଅଲକ୍ଷିତେ ଆପଣା ସୁଖ ?
କରୁଛି କି ମୁହିଁ ଆତ୍ମ-ପ୍ରବଞ୍ଚନା
ତେଣୁ ମୋ ମନେ ଏ ଦାରୁଣ ଦୁଃଖ ।

ଲଭିଅଛି ଏବେ ଆତ୍ମପରିଚୟ
ଲଭିଅଛି ମୋର ହୃଦ କାଳିମା,
କର ପ୍ରାଣସଖା ତୀବ୍ର କଷାଘାତ
ପରଖ ଏ ହୃଦ ସହନ ସୀମା ।

ବିଷାକ୍ତ ନୟନେ ମୋ ସରଳ ପ୍ରାଣେ
ଦେଖ ଯେବେ ସଖା କପଟ-ଜାଲ,
ଆଖି ପୋଛି ଦେଖ ମୋ ହୃଦେ ତୋ ହୃଦ,
ଆତ୍ମପରିଚୟେ ନ ଦିଅ ଗାଳ ।

ଗାଳ ଗଞ୍ଜନାକୁ ନାହିଁ ମୋର ଛଳ
ତୁମ ଅନୁତାପ ଏକା ଶୋଚନା,
ପାଅ ଯେବେ ସୁଖ ସେ କଟୁ ବଚନେ
ଦେବ ତା ମୋ ହୃଦେ ମଧୁ ମୂର୍ଚ୍ଛନା ।

ଫୁଲ ପରି ପ୍ରେମ     ଝାଉଁଳେ କି ବନେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାଗ,
ଦୂର କଲେ ମତେ     ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ-ପ୍ରଣୟ-କାଗ ।

ଏ ଜୀବନେ ପ୍ରେମ     ନୁହେ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା,
ଶୁଷ୍କ ନେହେ ଚକ୍ଷି     ଦେଖିବ ମୋ ହୃଦେ
ପ୍ରେମ ରସାଣିତ ଅମୃତ ଲେଖା ।

ପ୍ରେମେ ଅବଗାହି     ନିଜ ପରିଚୟ
ପାଇଅଛି ମୁଁ ଏ କ୍ଷୁଦ୍ର ଜୀବନେ,
ମୋ ହୃଦ-କଲ୍ଲୋଳ     ଉଛୁଳେ ଉଲ୍ଲାସେ
ଜଳେ ସ୍ଥଳେ ଫଳେ ଫୁଲେ ଗଗନେ ।

ଶତ ଆବର୍ଜନା     ସହସ୍ର ତାଡ଼ନା
କିବା ଶତ ସ୍ନିଗ୍ଧ ସୁମନ-ହାର,
ଏ ପ୍ରେମ-କଲ୍ଲୋଳେ     ସମାନ ସକଳେ
ପରମ ସାଦର ସ୍ନେହ ସମ୍ଭାର ।

ନିଜକୁ ଭୁଲି ମୁଁ     ପାଇଅଛି ସଖା
ନିଜ ପରିଚୟ ନିଜ ରୂପତ,
ତବ କଷାଘାତେ     ଜନମିଛି ମୋର
କଠୋର ପ୍ରହାର ସହା ଶକତ ।

ଗାଢ଼ ଆଲିଙ୍ଗନ ସୁଗୁରୁ ଚୁମ୍ବନ
ଅଶ୍ରୁଧାର ଯେଉଁ ପ୍ରେମ ବ୍ୟଞ୍ଜନା,
ଲୋହିତ ଲୋଚନ ନିଷ୍ଠୁର ବଚନ
ଉତ୍କଟ ଘର୍ଷଣ ତାର ଲାଞ୍ଛନା ।

ଏ ଜୀବନ ଯାକ ହେଲା ଅନୁଭବ
ଅଳପ ଦିବସେ ତୁମ ସଙ୍ଗରେ,
କେତେ ସୁଖ ଦୁଃଖ ସୁହାସ ଲୋତକ
ନିଭାଇଲି ଏକା ଅଙ୍ଗେ ଗୁପତେ ।

ତବ କୋପାନଳେ ଅପରାଧ ହୋଇ
ଝଙ୍କରୁ ଦ'ଗୁଣେ ଏ ମୋ ଚରଣ,
ବୁଝିଛି ଜଗତେ ଶେଷ ତୋଷ ଦେଇ
ପ୍ରେମସମ୍ପୃକ୍ତର ପ୍ରେମ ପ୍ରଦାନ ।

ତାଙ୍କ ପ୍ରେମ-ରାଜ୍ୟ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ଭୟ,
ସେ ମୋର ଦେବତା ମୋ ପ୍ରାଣ-ପ୍ରବାହ
ଭେଟିଅଛୁ ଅଜ ସେ ପ୍ରେମସିନ୍ଧୁ ।



# କାହିଁ ଅଛ ?

କାହିଁ ଅଛ ନାଥ ଚରଣ ଦେବତା?
ଦେଖାଦିଅ ମତେ ଥରେ ହେ,
ଭବ-ପାରବାରେ ଧାଏଁ ମ ପ୍ରହାରେ
ଏ ହୃଦୟ ମୋର ଥରେ ହେ ।

ତୁମେ ପର ପ୍ରଭୁ ମୋ ଅନ୍ତରଯାମୀ
ବସୁନାହିଁ ତ ଅନ୍ତରେ ହେ,
ରହିଥିଲେ ଲୁଚି ଦିଅ ବେଗେ ସୂଚି
ଦେଖାହେବ କି ମନ୍ତ୍ରରେ ହେ ।

ସାର ବସ୍ତୁ ଭବ ପ୍ରକାଶିଛ ହରି !
ବେଦ ବଦେ ସଙ୍ଗୀତରେ ହେ,
ଲୁଚ ରେଖ କାହିଁ ଏବେ ବସୁ ନାହିଁ
ବାହାରେ କିବା ଭିତରେ ହେ ।

ହେ ଦିବ୍ୟ-ଅଞ୍ଜନ ପ୍ରଭୁ ନିରଞ୍ଜନ !
ଦିଅ ଏ ନେତ୍ରରେ ବାରେ ହେ,
ତବ ଜ୍ୟୋତିରେଖା ହେଜ ମଧ୍ୟେ ଦେଖା
ଥାଉ ଅମା-ଅନ୍ଧକାରେ ହେ ।



# ଆହା ଚାଲିଗଲେ !

କି ମୋହନିଦ୍ରା ମୋତେ ଘୋଟିଥିଲା ।
କପାଁ ଏ ପାପ ଆଖି ନ ଫିଟିଲା । • ।

ପାଖରେ ମୋର ବସି
ସ୍ୱରୁ ମୋହନବଂଶୀ
ବଜାଇ କି ବେଗେ ସେ ସ୍ଖଳିଗଲା ।

ଡାକିଲି କେତେ ଥର
ହେବାକୁ ଉଜାଗର,
ଷଦେ ହେଲେ ଉତ୍ତର ନ ଆସିଲା ।

ମୋ କକ୍ଷ ଅନ୍ଧକୂପ
ସେ ପ୍ରଭାମୟ ରୂପ
ଆଲୋକ କାହିଁ କ୍ଷଣେ ଲଭିଗଲା ।

ନ ମେଳିଲି ନୟନ
ପଥେ ପଡ଼ିବା ଧନ
ଏ ଭାଗ୍ୟହୀନ ନେତ୍ର ନ ଦେଖିଲା ।



# ପିତୃପକ୍ଷ ତର୍ପଣ

ଆସିଅଛୁ ପିତୃପକ୍ଷ କରୁଛୁ ତର୍ପଣ
ମନ୍ତ୍ରପାଠ ତିଳୋଦକେ କରେଁ ସମର୍ପଣ ।

ପିତୃ ପିତାମହଗଣ ବୈଦିକ ବିଧାନେ,
ଦେବଗଣେ ଋଷିଗଣେ ପୂଜେ ଜଳଦାନେ ।

ଅଧିକ କହିବ କିବା ଏଥି କାରାବାସେ,
ଏ ଆଶ୍ୱାସ ସଙ୍ଗେ ମନେ ସଂଶୟ ମୋ ଆସେ ।

ମୁଁ ଯେ କାରାଗାରେ ବନ୍ଦୀ, ବନ୍ଦୀର ତର୍ପଣ
କରନ୍ତି କି ପିତୃଲୋକେ ସାଦରେ ଗ୍ରହଣ ?

ବନ୍ଦୀଶାଳେ ଦତ୍ତ ଜଳ ତିଳ ଉପହାର
କରନ୍ତି କି ପିତୃଲୋକେ ଆଦରେ ଆହାର

ବନ୍ଦୀ ଉଚ୍ଚାରିତ ସ୍ୱାହା ସ୍ୱଧା ବଷଟ୍‌କାର
ଢଳଇ କି ପିତୃଲୋକେ ଶୁଦ୍ଧ ସୁଧାଧାର ?

ବନ୍ଦୀ ପର ଅପରାଧୀ କଳୁଷିତ ପ୍ରାଣ,
ପିତୃ ଦେବଗଣେ ଗ୍ରାହ୍ୟ କପର ତା ଦାନ ?

ଅକାରଣ ତେବେ କି ମୋ ଉଦକ-ଅଞ୍ଜଳି,
ଏ ତିଳ ତଣ୍ଡୁଳ ମାତ୍ର କାକ-ଶ୍ୱାନ-ବଳି ?

କରୁଛୁ କି ପଣ୍ଡଶ୍ରମ ଊଷର କର୍ଷଣ,
ଭାରତୀର କଷ୍ଟସାଧ୍ୟ ବୃଥା ଆୟୋଜନ ?

କରୁଣା ସଂଶୟେ ପ୍ରାଣ ବ୍ୟାକୁଳ ବିଶେଷ,
କେ ଏଥି ତୋଷିବ ମନ ଦେଇ ଉପଦେଶ ?

ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇଁ
ଅନ୍ତରୁ ଉତ୍ତର ଆସେ ନାହିଁ ନାହିଁ ନାହିଁ ।

ନୁହେ ନରହନ୍ତା କିବା ପରଧନହାରୀ,
ପରଶି ନାହିଁ ଏ ତନୁ କେବେ ପର ନାରୀ ।

ଜାତସାରେ ଦେଇନାହିଁ ପର ପ୍ରାଣେ ପୀଡ଼ା
ଅପରାଧେ ଅନ୍ୟ ପାଶେ ହୋଇନାହିଁ ଛିଡ଼ା ।

ହରି ନାହିଁ କେବେ ଶସ୍ୟ ବଳେ ପର କ୍ଷେତ୍ରୁଁ,
କାଟି ନାହିଁ ସାଧାରଣ ଜଳାଶୟ ସେତୁ ।

କରି ନାହିଁ ଶାନ୍ତିଭଙ୍ଗେ କାହିଁ ଆୟୋଜନ,
ଦେଇ ନାହିଁ ଜାତି-ଧର୍ମ-ବିଦ୍ୱେଷ-ଭାଷଣ ।

କରି ନାହିଁ ପରନିନ୍ଦା ଈର୍ଷା ସବୁକାଳେ,
ଅପରାଧେ କଳୁଷିତ ତେବେ କି ପ୍ରକାରେ ?

ଭାବନ୍ତି ମନେତ ସେ ରାଜମାତ-ଅପରାଧୀ,
ରାଜାପ୍ରତି ମନେହେଲେ କେବେ ନାହିଁ ବାଧି

ରାଜା ପ୍ରଜାଙ୍କର ଶାନ୍ତି ଶୁଭ ଅଭିଳାଷେ,
ପ୍ରତ୍ୟହ ପ୍ରାର୍ଥନା ମୋର ବିଭୁପଦ ପାଶେ ।

କାହିଁ ରାଜଧର୍ମ ଆଜ ପବିତ୍ର ପ୍ରଭାତେ,
ମରନ୍ତି ଯେ ଦେଶେ ପ୍ରଜା ଦୁର୍ଭିକ୍ଷ ଆଘାତେ ?

ସୀତା ଦମୟନ୍ତୀ ବଂଶେ ଜାତ କୁଳାଙ୍ଗନା,
ଲଭନ୍ତି ଯେ ଦେଶେ ଆଜ ଘୋର ନିର୍ଯାତନା ।

ପ୍ରଜା ଲାଗି ସବ ତ୍ୟାଗ ସହିଁ ରାଜନୀତି,
ମହାରାଜା ରାମଚନ୍ଦ୍ର ଲଭେ ପ୍ରଜାପ୍ରୀତି ।

ତେଜିଥିଲେ ପ୍ରାଣପ୍ରିୟା ସୀତା ବନବାସେ,
ଏହିକି ସେ ଦେଶ ଯହିଁ ପ୍ରଜାସ୍ୱତ୍ୱ ଅଂଶେ,

ଜ୍ୟେଷ୍ଠ ସୁତ ଅସମଞ୍ଜ ସଗର ରାଜନ
ଅକାତରେ କରିଥିଲେ ଦେଶୁଁ ବିସର୍ଜନ ?

ରାଜପଦ ଅର୍ଥ ଯହିଁ ପରଜା-ରଞ୍ଜନ,
ସହେ ପ୍ରଜା ତହିଁ ଏବେ କି ଗୁରୁଗଞ୍ଜନ ?

ରାଜଧର୍ମ କ୍ଷାତ୍ରଧର୍ମ କ୍ଷତୁଁ କରେ ତ୍ରାଣ,
ରାଜମନ୍ତ୍ର ଶ୍ରେଷ୍ଠେ ଯେବେ କ୍ଷତ ପ୍ରଜାଗଣ ।

ଘୋର ଅପଚାର ଯେବେ ରାଜମନ୍ତ୍ର ନାମେ,
ସତ୍ୟ ରାଜମନ୍ତ୍ର କାହିଁ ଏ ଭାରତ ଧାମେ ?

ପ୍ରଜା ଲାଗି ରାଜା, ପ୍ରଜା ହିତେ ରାଜମନ୍ତ୍ର,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି ।

ସାର୍ବଭୌମ ଜନାୟତ ଏ ଶାସନ ବିଧି,
ଲଭିଛି ସର୍ବତ୍ର ଆଜ ବିଶେଷ ପ୍ରସିଦ୍ଧି ।

ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜେ ଅମାତ୍ୟସଂସ୍ଥା ରାଜମନ୍ତ୍ର ଯନ୍ତ୍ର ।

କାହିଁ ଏଥି ରାଜା ? ଏ ଯେ ନୌକର ସାନ୍ତ୍ୱ,
ପ୍ରଜା ସୁଖ ଶାନ୍ତି ନାମେ ବୃଥାଧର୍ମଧ୍ୱାନ୍ତ ।

ପ୍ରଜାସ୍ୱତ୍ୱ ପ୍ରଜାମତ ଛଳନା କେବଳ,
ପ୍ରେଷ୍ୟ ଗୋଷ୍ଠୀ ଇଚ୍ଛାଧୀନ ଏ ଶାସନବଳ ।

ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଜ୍ଞ ସ୍ୱାଧୀନ ବିହାର,

ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତ୍ତ,
ଦୁଇ ସ୍ତମ୍ଭେ ମାନବର ସମାଜ ସୁସ୍ଥିତ ।

ଭାରତେ ଅମାତ୍ୟସଂସ୍ଥା ରାଜଶକ୍ତି ଆଜ
ଓପାଡ଼ି ଏ ଦୁଇ ସ୍ତମ୍ଭ ଭାଙ୍ଗିଛି ସମାଜ

ଦେବଭୂମି କର୍ମଭୂମି ଧର୍ମଭୂମି ସାର
ଭାରତରେ ନାହିଁ ନର ଜନ୍ମ ଅଧିକାର ।

ଆର୍ଯ୍ୟଋଷି ପ୍ରତିଷ୍ଠିତ ଦେବ ଭାରତ
ନିସ୍ତେଜ ନଷ୍ଟ ଭ୍ରଷ୍ଟ ହୀନ ପରପଦାନତ ।

ଦେଖି ଏ ଦୁର୍ଗତି ମୋର ପିତୃ ପିତାମହ
ଅନ୍ତରୀକ୍ଷେ ଦେବଗଣ ଋଷିଗଣ ସହ

ବିକଳେ କାନ୍ଦନ୍ତି, ମୋର ହୃଦେ ଏ ପ୍ରଶ୍ନ,
ମାନବ କପରି ତେବେ ଏ ଶାସନଶକ୍ତି ?

ରାଜଶକ୍ତି ଉଲ୍ଲଙ୍ଘନେ ନାହିଁ ମୋର ଦୋଷ
ଏଥି ମୋର ପିତୃଗଣ ଲଭନ୍ତୁ ସନ୍ତୋଷ ।

ନୁହେ ଯେଉଁ ଶକ୍ତି ପ୍ରଜାମତ ଅନୁକୂଳ
ଯାର ନିଷ୍ପେଷଣେ ପ୍ରଜା ବିବ୍ରତ ବ୍ୟାକୁଳ,

ଯାର ବ୍ୟୂହେ ଏକ ଦେଶେ ଅନ୍ୟ ଅଧିଗତ,
ଏକ ଜାତି ଅନ୍ୟ ଜାତି ଶିର ପଦାନତ,

ଯାର ଚକ୍ରେ ତ୍ରିଂଶ କୋଟି ଭାରତ ସନ୍ତାନ
ନିଜ ବାସେ ପରବାସୀ ନିଜ ଦେଶେ ଶ୍ୱାନ,

ଯାର ଫଳେ ଉପବାସୀ ମୋର ଦେଶବାସୀ
ଭାରତ ଜନନୀ ମୋର ପରଦ୍ୱାରେ ଦାସୀ,

ନୁହେ ସେ ଗୀତ ମୋ ପିତୃ ଦେବର୍ଷିସମ୍ମତ,
ନୁହେଁ ତାହା ଆର୍ଯ୍ୟଧର୍ମ ନ୍ୟାୟ ସୁସଙ୍ଗତ ।

ଅପରାଧ ନୁହେ କଷ୍ଟେ ସେ ଗୀତ ଲଙ୍ଘନ,
ଭାରତର ଧର୍ମ ଯାର ଉଚ୍ଛେଦ ସାଧନ ।

ଆସ ବିଶ୍ୱଦେବା, ଆସ ମହର୍ଷିନିବହ
ଆସ କୁରୁକୁଳ ବୃଦ୍ଧ ଶ୍ରେଷ୍ଠ ପିତାମହ !

ଆସ ବର୍ହିଷଦ ଆଦି ସର୍ବ ପିତୃଗଣ,
ଆସ ସର୍ବ ବସୁ ଯମ ଅନଳ ପବନ;

ଆସ ବନସ୍ପତି ଗିରି ସରିତ ସାଗର,
ଖେଚର ଭୂଚର ଯକ୍ଷ ପିଶାଚ କିନ୍ନର,

ଅଖିଳ ବ୍ରହ୍ମାଣ୍ଡବାସୀ ସର୍ବ ଚରାଚର,
ଦେବତା ଅସୁର ନାଗ ରକ୍ଷ ସିଦ୍ଧନର

ଆସ ମୋର ପିତୃ ମାତୃ ମାତାମହଗଣ,
ଘେନ ସର୍ବେ ଏଥି ମୋର ଭକ୍ତି ଆବାହନ ।

ଘେନ ମୋର ଜଳାଞ୍ଜଳି ଘେନ ନମସ୍କାର,
ଦିବ୍ୟ ଅବଧାନେ ସର୍ବେ କର ହେ ବିଚାର ।

ନ୍ୟାୟର ଏ ମର୍ମ ଭୁଲେ ଭୁଲ କହ ଫେଡ଼ି,
ଯେ କାରଣେ ଲାଗିଛି ମୋ ହାତେ ଲୁହାବେଢ଼ି

ଯେ ବ୍ୟାପାରେ ଭୋଗେ ମୁହିଁ ଆଜ କାରାଗାର
କହ ତହିଁ ଅପରାଧ ଯଥାର୍ଥ କାହାର ?

ମୁଁ କି ଏକା ଶତ ଶତ ଭାରତ ସନ୍ତାନ,
ଭୋଗିଛନ୍ତି ଅକାତରେ କାରା ଅପମାନ ।

ଭୋଗନ୍ତି ଅଦ୍ୟାପି କେତେ ଦାରୁଣ ଯାତନା
ତେଜି ଜୀବନର ସୁଖ ସମ୍ଭୋଗ ବାସନା ।

ଶୋଣିତ-ପିପାସୁ ଘୋର ଦାନବ ସଭ୍ୟତା
ନାଶିବାକୁ ପ୍ରକୃତରେ ଯେ ଅହିଂସା ବାରତା;

ଜିଘାଂସା ବିଷକ୍ତ ନରେ ଶାନ୍ତି ସୁଧା ପଥ
ଦେଖାଇବା ଜୀବନରେ ଯାର ମୁଖ୍ୟବ୍ରତ,

ଶମ ଦମ ସତ୍ୟ ଶୁଦ୍ଧ ତ୍ୟାଗପୂତ ପ୍ରାଣ
ମାନବ-ଗୌରବ ଗାନ୍ଧି ଭାରତ-ସନ୍ତାନ,

ସ୍ୱରାଜ ଲଗି ଏବେ ବନ୍ଦୀ କାରାଗାରେ,
କାହା ଦୋଷ ଏଥି ? କହ ଉଚିତ ଉତ୍ତରେ ।

ରାଜଭକ୍ତ ଭାରତରେ ଚିର ଶାସ୍ତ୍ରବିଧି,
ନୃପତି ଭାରତ-ନେତ୍ର ଦେବ-ପ୍ରତିନିଧି

ତୁଟିଲା ଭାରତେ ଯେବେ ଆଜ ଏ ବିଶ୍ୱାସ,
କୋଟି କୋଟି ପ୍ରାଣେ ଘର୍ଣ୍ଣ ନିରାଶା ନିଶ୍ୱାସ,

କାହାର ଏ ଅପରାଧ ? କେ ଏଥିର ହେତୁ !
ଭାଙ୍ଗିଲା କେ ଶାସନର ସନାତନ ସେତୁ ?

ଯେ ଅମାତ୍ୟ-ସଂସ୍ଥା ମାତ୍ର ଅନିଷ୍ଟର ମୂଳ,
ଯାହାର ପ୍ରଭାବେ ପ୍ରଜା ବ୍ୟଥିତ ବ୍ୟାକୁଳ,

ରକ୍ତ-ମାଂସ ଦେହ ଧରି ଆଜ କେତେ ଦିନ,
ଭାରତେ ରହିବ ନର ସେ ମାତ୍ର ଅଧୀନ ?

ଯେ ବିଧାନେ ସର୍ବେସର୍ବା ରାଜପ୍ରେଷ୍ୟଗଣ,
ପ୍ରଜାକୁଳ ସହେ ଯହିଁ ନିତ୍ୟ ନିଷ୍ପେଷଣ ।

ଶାସନ ବୋଇଲେ ନୁହେଁ କେବଳ ପ୍ରଜାଙ୍କ
ପାଳନର ଅର୍ଥେ ପ୍ରଜା ବୁଝେ କରଭାର,

ସମ୍ପଦ ଶଠତା ନୁହେଁ ପାଏ ସମ୍ବର୍ଦ୍ଧନା,
ଦରିଦ୍ର ନିରନ୍ନ ପ୍ରଜା ଭୋଗେ ନିର୍ଯ୍ୟାତନା,

ମାନବ-କର୍ତ୍ତବ୍ୟ ଜ୍ଞାନ ଥିବ ଯାର ଲେଶ
ଅନୁଭବେ ଅନ୍ତରେ ସେ 'ମୋ ଜାତି ମୋ ଦେଶ'

ଅହିଂସାର ଶାନ୍ତି-ପଥେ ଏଥି ପ୍ରତିବାଦ
କରେ ଯେବେ ସେହି ତାର କିବା ଅପରାଧ ?

ଏହି ଅପରାଧେ ଗାନ୍ଧି ଏବେ କାରାଗାରେ,
ଏହି ଅପରାଧେ ଦଣ୍ଡ ଘଟିଛି ମୋଠାରେ ।

ଭୋଗୁଛନ୍ତି ଦଣ୍ଡ କେତେ ଗୃହସ୍ଥ ସନ୍ୟାସୀ
ଏଥି କାହା ଦୋଷ କହ ତ୍ରିଲୋକ-ନିବାସୀ ?

ପ୍ରେଷ୍ୟପ୍ରତିଷ୍ଠିତ ହେଲେ ଶାସନପଦ୍ଧତି,
ଲଭେ ପ୍ରଜାକୁଳ ନାନା ବିଷମ ଦୁର୍ଗତି,

ପ୍ରଜାସାଧାରଣ ମତ ଯେବେ ଉପେକ୍ଷିତ
ଅଶାନ୍ତି ଅନଳ ହୁଏ ହୃଦୟେ ସଞ୍ଚିତ,

ଦମନ-ପବନେ ଥରେ ଜଳିଲେ ପାବକ
ମାନେ ନାହିଁ ବେଢ଼ି ଶୂଳ କୃପାଣ ସାୟକ ।

ଜଳେ ସେ ଦାବାଗ୍ନି କ୍ରମେ ମହାରୁଦ୍ରବେଶେ,
ଭୀଷଣ ବିପ୍ଳବ ବାତ୍ୟା ବହେ ସାରା ଦେଶେ ।

ବରଷେ ଶୋଣିତଧାର ଭାସେ ରସାତଳ,
ଅବଶେଷେ ପ୍ରଜା ପଦେ ନମେ ରାଜବଳ ।

ମାନବ-ଜଗତେ ଏନ୍ତ୍ର ଗନ୍ଥ ପୁରାତନ,
ଭଏ ଇତିହାସ ଯାର ଶତ ନିଦର୍ଶନ ।

ନ ଉଠ୍ ଏ ଭାରତେ ସେ ହିଂସାନଳ ଶିଖା,
ନ ଆସୁ ଚକ୍ରାନ୍ତ ଦଟ୍ୟା ସ୍ୱାମ-ଚଣ୍ଡିକା ।

ଅହିଂସାର ଆଦ୍ୟ ସ୍ଥାନ ଏ ଋଷି ଆଶ୍ରମ,
ଶିଖାଉ ଜଗତେ ପୁଣି ଅହିଂସା ନିୟମ ।

ଏଥିଲାଗି ଗାନ୍ଧି କଲେ ଅହିଂସା ପ୍ରଚାର,
ଚଉଦିଗେ ବ୍ୟାପିଲା ସେ ଶୁଭ ସମାଚାର ।

ଅହିଂସାର ମହାମନ୍ତ୍ରେ କୋଟି ନରନାରୀ
ଜାଗିଲେ ଭାରତେ ବୃଦ୍ଧ ତ୍ୟାଗୀ ବ୍ରହ୍ମଚାରୀ ।

ପୁରପଲ୍ଲୀ ଗିରି ବନେ ଉଠେ ଶାନ୍ତି ତାନ,
ନବ ଆଶା ନବୋତ୍ସାହେ ଜାଗେ କୋଟି ପ୍ରାଣ

ଅହିଂସା ବ୍ରହ୍ମାସ୍ତ୍ରେ ହିବ ଦ୍ରେଷ୍ୟବଳ ନାଶ,
ମିଳିବ ସ୍ୱରାଜ୍ୟ — ଦୂର ହେବ ଏ ବଣ୍ଡାସ ।

ଗାନ୍ଧିଙ୍କର ହେଲା ଏହା ମହା ଅପରାଧ,
ଗଣିଲେ ଅମାତ୍ୟଗଣ ଶାସନ-ପ୍ରମାଦ ।

ସାନ ବଡ଼ ଆଜ ଯେତେ ଶାନ୍ତି-ସେନାଗଣ,
ଉଡ଼ାଇଲେ ଗ୍ରାମେ ନଗ୍ରେ ଅହିଂସା-କେତନ

ଶିଖାଇଲେ ବୁଝାଇଲେ ଲୋକେ ଆତ୍ମବଳ,
ଦ୍ରେଷ୍ୟଗଣ ନୋଟିସ ଦେଲେ ସେ ସକଳେ ଛଳ ।

ସେଥି ଖଳ ବୋଲି ମୋର ଏବେ କାରାବାସ,
ଏଥିରେ ମୋର କି ଦୋଷ ? କର ହେ ପ୍ରକାଶ

ହେ ଦ୍ୟୁଲୋକବାସୀ ଦେବ ପିତୃଋଷିଗଣ,
ସବ ଭୂତ ଚରାଚର, ଘେନ ମୋ ତର୍ପଣ ।

ଅପରାଧେ କଳୁଷିତ ଯେବେ ମୋ ଅନ୍ତର,
ସଦୟେ ସୁଧାର କର, ମୁଁ ଅତି କାତର ।

ନାହିଁ ଯେବେ ଦୋଷ ମୋର ବର୍ଷ ତେବେ ତୁଷ୍ଟି,
ଏ ତର୍ପଣ କାଳେ ମୋତେ ଦିଅ ଦିବ୍ୟ ଦୃଷ୍ଟି ।

ଛୁଟୁ ମୋ ମାନବ-ମୋହ, ଘୁଞ୍ଚୁ ମୋ ସଂଶୟ
ତବପୁଣ୍ୟ ଦିବ୍ୟାଲୋକେ ଆଲୋକୁ ହୃଦୟ ।

ଏବେ ଯେ ଦେଖେଁ ମୁଁ ସର୍ବେ ଅନ୍ତରୀକ୍ଷେ ଠୁଳ,
ଦିଗନ୍ତ ଉଦ୍‌ବିଗ୍ନ ବ୍ୟସ୍ତ ବ୍ୟଥିତ ବ୍ୟାକୁଳ ।

ଆସ ନାହିଁ କିପାଁ ଏଥି ଆବାହନ ସ୍ଥାନେ,
ଲଭିଛ କି ବ୍ୟତିକ୍ରମ ତର୍ପଣ ବିଧାନେ ?

କାରାଗାରେ କରିବି ମୁଁ କିବା ଆୟୋଜନ ?
ଆନ୍ତରିକ ଶ୍ରଦ୍ଧା ମୋର କର ହେ ଗ୍ରହଣ ।

ପର ଭୂମେ ପିତୃକାର୍ଯ୍ୟ ନୁହେ ସୁବିହିତ,
ଓହ୍ଲାଇବା ପାଇଁ ତେଣୁ ହୁଅ କି ଶଙ୍କିତ ?

ଦେଖି ନିଜ ବଂଶେ ଜାତ ଭାରତ-ନିବାସୀ,
ନିଜ ଦେଶେ ପରଦେଶୀ ସ୍ୱଗୃହେ ପ୍ରବାସୀ ।

ହେ ଭାରତପୂଜ୍ୟ ପୂର୍ବ ପିତୃ-ପିତାମହ,
ଦେଖେଁ ତବ ନେତ୍ରୁ ଅଶ୍ରୁ ବହେ ଅହରହ ।

ପରଶ-ଅଯୋଗ୍ୟ ଜନ ପାଶୁଁ ରହି ଦୂରେ,
ଶୁଦ୍ଧଦେହୀ ନିଏ କିଛି ଯେସନ ଆତୁରେ,

ବଢ଼ାଇ ଅନଛା ସଦ କର ସଙ୍କୁଚତେ,
ଦେଖୁଛୁ ମୋ ତଳୋଦକ ନେଉଛ କୁଣ୍ଠିତେ ।

ଅସ୍ପୃଶ୍ୟ ମୁଁ ପରାଧୀନ ଏ ଦୁଃଖ ଭାବନା
ଦିଏ ହୃଦେ ଅନୁକ୍ଷଣ ଅସହ୍ୟ ବେଦନା ।

ତବ ଗଢ଼ା ଦେବାଳୟେ ନୁହେଁ ଅଧିକାରୀ;
ତବ ପ୍ରତିଷ୍ଠିତ ରାଜ୍ୟେ ମୁଁ ଦୀନ ଭିକାରୀ ।

ତବ ମର ତନୁ ଯହିଁ ମିଶିଛି ମାଟିରେ,
ପଡ଼ିଅଛି ଅସ୍ଥି ତବ ଯେଉଁ ନଦ୍ଧମାରେ ।

ସେ ପୁଣ୍ୟ ଶ୍ମଶାନ ନୁହେ ମୋର ଅଧିକାରେ,
ଅମାବୃତ ଶ୍ନାନ ମୁହିଁ ଭାଗୀରଥି ଧାରେ !

ଜାତି ଧର୍ମ ନିର୍ବିଶେଷେ ଭାରତ ତନୟ,
ଭୋଗନ୍ତି ସରବେ ଏହି ଦଶା ବିପର୍ଯ୍ୟୟ ।

ପିତୃପ୍ରତିଷ୍ଠିତ ରାଜ୍ୟେ ଯେହୁ ପରାଧୀନ,
ଜଗତେ ତା ତହୁଁ ବଳ ନାହିଁ କେହି ହୀନ ।

ପିତୃରାଜ୍ୟେ ନାହିଁ ଯାର ପୂର୍ଣ୍ଣ ଅଧିକାର,
ସେ ଅଧମ ସୁତ ଶିରେ ସହସ୍ର ଧିକ୍କାର ।

ସର୍ବସ୍ୱାନ୍ତ ପରାଧୀନ ହୋଇ ପିତୃଗଣ
ଅକିଞ୍ଚନ ଭାବେ ଯେବେ ତେଜନ୍ତି ଜୀବନ ।

ସେହି ଏକା ସୁସନ୍ତାନ କୁଳର ଗୌରବ,
ଆଣେ ଯେ ଫେରାଇ ପୁଣି ଅତୀତ ବିଭବ,

ସେ ଏକା ଦାୟାଦ ନାମ କରଇ ସାର୍ଥକ,
ଯା ଯୋଗେ ତରନ୍ତି ପିତୃ ଦାସତ୍ୱ ନରକ ।

ଜନନୀ ଜନମଭୂମି ସ୍ୱର୍ଗୁଁ ଗରୀୟସୀ,
ଗାଇଲେ ଯେ ପୁଣ୍ୟଶ୍ଲୋକ ସୁକବି ମହର୍ଷି ।

ନ ବୁଝେ ମହତ୍ତ୍ୱ ତାର ତବ କୁଳେ ଜବ,
ନ କରେ ସେ ଦେଶ ପ୍ରେମ ପ୍ରାଣେ ଅନୁଭବ ।

ସେଥିଲାଗି ମନେ ପର କରୁଛ ଶୋଚନା,
ଦେଖି ଏ ପବଶଭୂମି ଦୁଃସହ ଲାଞ୍ଛନା ।

ଶରଣ୍ୟ କରେଣ୍ୟ ଦେବଋଷି ପିତୃଗଣେ,
ତର୍ପଣ କରେ ଯେ କାଗ ଆବଦ୍ଧ ପ୍ରାଙ୍ଗଣେ ।

କଲୁଷାର ଦ୍ରବ୍ୟ ନେଇ ଦେଖେଁ ଯେ ଆକାଶେ,
ତବ ଶୋକାକୁଳ ଛବି ସୁସ୍ପଷ୍ଟ ପ୍ରକାଶେ ।

କି ଦୁଃଖ ଆବେଗେ ମୋର ବିଦୀର୍ଣ୍ଣ ହୃଦୟ,
ମୁଁ କି ସେ ସ୍ୱାଧୀନ ଆର୍ଯ୍ୟ ମହର୍ଷି ତନୟ;

ଯାହାର ସ୍ୱାଧୀନ ଚିନ୍ତା ଦିଗ ଦିଗନ୍ତରେ
ବିସ୍ତାରିଲା ଜ୍ଞାନାଲୋକ ଧରଣୀ ପୃଷ୍ଠରେ ?

ଗଙ୍ଗା ଗୋଦାବରୀ ଆଦି ପବିତ୍ର ସରିତେ,
ଏ କାଗ ହୃଦକେ ଆଣି କଲୁ ମୁଁ ଯେ ଚିତ୍ତେ ।

ଅଛି କି ସେ ନଦୀ ନଦେ ସ୍ୱର୍ଗୀୟ କରଣି,
ଅଛି କି ସେଥିରେ ମୋର ସ୍ୱଚ୍ଛନ୍ଦ ସରଣି ?

ବିଶ୍ୱବାସୀ ଚରଚରେ କଣ ଆମନ୍ତ୍ରଣ,
ମୁଁ ଯେ ଏଥି କରେ ଜଳ ଅଞ୍ଜଳି ଅର୍ପଣ ।

ସେ ସାରା ବିଶ୍ୱରେ ମୋତେ ଅଛି କାହିଁ ସ୍ଥାନ ?
ସବଶ ମୋ ଭାଗ୍ୟ ଦୋଷର ପୀଡ଼ା ଅପମାନ ।

ଏ ଦାରୁଣ ଚିନ୍ତାଗ୍ନି ହବ ଯେ ଯନ୍ତ୍ରଣା;
ତାହା କହେ ସ୍ୱର୍ଗବାସୀ ତୁମ୍ଭଙ୍କୁ ଅଜଣା ?

ଜାଣୁଅଛ ଯେତେକ ମୋର ଅନ୍ତର କଷଣ,
ଅନୁଗ୍ରହେ କର ତବ ଆଶିଷ ବର୍ଷଣ ।

ତୁମ୍ଭର ସୁକୃତବଳେ ଏତେକାଳ ଆଜ,
ଭାରତ-ସନ୍ତାନ ହୃଦେ ଅଙ୍କୁରେ ସ୍ୱରାଜ୍ୟ ।

ଆସୁ ସ୍ୱର୍ଗରାଜ୍ୟୁଁ ତବ ପବିତ୍ର ପ୍ରେରଣା,
ଝରୁ ଶୁଭ ଆଶୀର୍ବାଦ ଅମୃତ ଝରଣା,
ପଡ଼ୁ ଏ ଭାରତ-ପ୍ରାଣେ ସ୍ୱର୍ଗୀୟ କିରଣ
ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ;

ସ୍ୱରାଜ୍ୟ ଅଙ୍କୁର କ୍ରମେ ହେଉ କଳ୍ପତରୁ,
ଭାରତ ଅଶ୍ୱତ୍ଥ ଶାଖା ଫୁଲ ଫଳ ଧରୁ;
ଭାରତ-ପ୍ରଭାବେ ହେଉ ସାର୍ଥ ଋଷିବାଣୀ
ମଧୂମସ୍ତୁ ଭାବେ ମଗ୍ନ ହେଉ ବିଶ୍ୱପ୍ରାଣୀ ।
ସର୍ବ ସିନ୍ଧୁ ସ୍ରୋତେ କ୍ଷରୁ ମଧୁମସ୍ତୁ ନୀର
ବହୁ ମଧୂମସ୍ତୁ ଗନ୍ଧ ଶୀତଳ ସମୀର ।

ମଧୂମସ୍ତୁ ରସେ ପୁଷ୍ଟ ହେଉ ବନସ୍ପତି,
ମଧୂମସ୍ତୁ ରମେ ଶୋଭୁ ସର୍ବ ବସୁମତୀ ।

ହେଉ ମଧୂମସ୍ତୁ ଉଷା ପ୍ରଦୋଷ ରଜନୀ,
ନଭୋଦେଶେ ମଧୂମସ୍ତୁ ରବି ଦିନମଣି ।

ମଧୂମସ୍ତୁ ଋତେ ହେଉ ବିଶ୍ୱ ଶନାହତ,
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ-ସଙ୍ଗୀତ ।



# ବନ୍ଦୀର ବିରହ ବ୍ୟଥା

ମଧୁର ବସନ୍ତ ସମସ୍ତ ଦିନ ହେଲାଣି ଶେଷ,
ଛାଡ଼ି ପୂର୍ବ ଏବେ ତପନ ଯିବେ ପଶ୍ଚିମଦେଶ ।

ବିଦାୟର ତେଣୁ ଲାଗିଛି ଆୟୋଜନ ବିସ୍ତର,
ନାନାରଙ୍ଗ ଚନ୍ଦ୍ରାତପେ ଆଚ୍ଛାଦିତ ଅମ୍ବର ।

ଦଳେ ଦଳେ ପକ୍ଷୀ ଗାଆନ୍ତି ଉଚ୍ଚେ କରୁଣ ଗାନ,
ତରୁ ଶିର ଲୁଣ୍ଠା' ବସୁଧାର ପାଦେ କରେ ପ୍ରଣାମ ।

ତାଙ୍କ ଶିରେ ସୂର୍ଯ୍ୟ ଦିଅନ୍ତି ହେମକିରଣୀ ପାଟ,
ଅନୁରକ୍ତ ଭୃତ୍ୟ ମସ୍ତକେ ଯଥା ବାନ୍ଧେ ସମ୍ରାଟ ।

ଅସ୍ତାଚଳ ଉଚ୍ଚ ଆସନେ ବସି ହସନ୍ତି ରବି,
ପ୍ରାଚୀ ଅନୁରାଗେ ରଞ୍ଜିତ ଗୁରୁ ବଦନ ଛବି ।

ପ୍ରାଚୀ ଅଭିମୁଖେ ଲମ୍ବାଇ ସ୍ନିଗ୍ଧ କନକ କର,
କୋମଳ ଆଶ୍ୱାସେ ଦେଖାନ୍ତି ନିଜ ସ୍ନେହ ଆଦର ।

ସମୀରଣ ମୃଦୁ ମର୍ମରେ ପ୍ରେମ ଅସ୍ପଷ୍ଟଗିର,
କହନ୍ତି "ଅଟରେ ଫେରିବ ଧନ ! ନୁହ କାତର ।"

ଅନୁରାଗ ରଙ୍ଗ ପ୍ରକାଶେ କ୍ଷଣେ ପ୍ରାଚୀ-କପୋଳେ,
ତା ମଧ୍ୟରେ କିନ୍ତୁ ବିରହ-ଦୁଃଖ-କାଳିମା ଦୋଳେ ।

ରବି ଲାସ୍ୟହାସ୍ୟେ ପ୍ରକଟେ ଗୁରୁ ବିଷାଦରେଖା,
ଅନୁଭବୀ ନେତ୍ରେ କେବଳ ସିନା ଯାଏ ସେ ଦେଖା ।

ଆହା, ପ୍ରିୟଜନ ବିରହ କି ଦାରୁଣ କଷଣ ?
ପ୍ରୀତିପାଶେ ବନ୍ଧା ଜଗତେ ସର୍ବ ଜଡ଼ ଚେତନ ।

## ବନ୍ଦୀର ବିରହ ବ୍ୟଥା

ଏ ବିରହ ଦୃଶ୍ୟ ଦଅଇ ବନ୍ଦୀ ପରାଣେ ବ୍ୟଥା,
ପଲକେ ପଲକେ ପଡ଼ଇ ମନେ କେତେ ନ କଥା ।

ସମ୍ମାନ ଟିକଏ ପିପାସୁ ସ୍ୱଚ୍ଛ ନ ଦଅ ଦ୍ୱାରେ,
ପ୍ରଣୟ ପ୍ରଲୁବ୍ଧ ଦେଖିବ କ୍ଷଣେ ରକ୍ତ ବାହାରେ ।

ପ୍ରଣୟ-ପୀୟୁଷେ ମିଶିଛି କପାଁ ବିରହ-ବିଷ
ବିଶ୍ୱବାସୀ ପ୍ରତି ଈଶର ଏ କି ବିଧି ଆଶିଷ ?

ସୁନ୍ଦର ସରୋଜ ଚରଣେ କପାଁ କଣ୍ଟକ ଅଛି,
ବିପରୀତ ସୃଷ୍ଟି ରହସ୍ୟ କିଏ ପାରିବ କହି ?

ପ୍ରିୟଜନ ଭିନ୍ନ ସ୍ଥାନ ମୁଁ ରୁଦ୍ଧ ବନ୍ଦୀ ଏଠାରେ,
ବିରହ-ବିଷମ ବିଷେ ମୋ ମନ ପରାଣ ଜାରେ ।

ବିଶ୍ୱ ପ୍ରକୃତିରେ ଦେଖିବେ ସମ ହୃଦ-ବେଦନା,
ଛାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।

ରହ ଆଉ ଦଣ୍ଡେ ପିପାସୁ କପାଁ କର କଟାଳ ?
କକ୍ଷେ ଅବରୋଧ ସମୟ ପରା ଗୋଧୂଳିକାଳ !

ଦେଖ ରବି ରଚି ହୁଅଇ ଭବ ଏବେ ଗଗନେ,
ଆଉ ଟିକଏ ମୁଁ ବୁଲିବି ଏଥି କାରା-ପ୍ରାଙ୍ଗଣେ ।

ଯମଦୂତ ହୃଦେ କରୁଣା କାହୁଁ ବସିବ ଭଲେ ?
ଅଧିକ ନ କହି ମର୍ଯ୍ୟାଦା ଜଗି ଫେରିବ ଭଲେ ।



# ବନ୍ଦୀର ସାନ୍ଧ୍ୟ ଉକ୍ତି

ସତ୍ୟ ସ୍ୱାଧୀନତା ଲାଗି ଯାର କାରାବାସ,
ତା ଲାଗି ଏ ପୁଣ୍ୟକଳେ କରେଁ ମୁଁ ବିଶ୍ୱାସ ।

ପଶ୍ଚିମ ଭୂଭାଗେ ଆଜ ଯବନ ମହର୍ଷି,
ଶାନ୍ତ ଦାନ୍ତ ମହାଯୋଗୀ ଆଦ୍ୟ ତତ୍ତ୍ୱଦର୍ଶୀ,

ଆତ୍ମାର ଅମର ତତ୍ତ୍ୱ ପ୍ରଚାର ଲୋକରେ,
ସତ୍ୟସନ୍ଧ ସକ୍ରେଟିସ୍ ଯେବେ ଅକାତରେ,

ପାଷଣ୍ଡ ଶାସନ-ଦଣ୍ଡେ ଦେଖାଇଲେ ଶିର,
ମୁଖେ ଯେବେ ବିଷପାତ୍ର ଲଗାଇଲେ ଧୀର ।

ଆଥେନସ ଆକାଶେ ଏକ୍ଷ ଅସ୍ତମିତ ରବି,
ଦେଖାଇଲା ହାସ୍ୟାଭାସେ ନବାନନ୍ଦ ଛବି ।

ବୁଡ଼ି ନାହିଁ ଏବେ ସୂର୍ଯ୍ୟ, ଆସି ନାହିଁ କାଳ,
ନ ପିଅ ମହର୍ଷି, ଆଉ ମୁହୂର୍ତ୍ତେ ସମ୍ଭାଳ ।

ସକରୁଣେ ନିବେଦନ କଲେ ଶିଷ୍ୟଦଳ,
ମମତା ଉପେକ୍ଷି ମୁନି ପିଇଲେ ଗରଳ ।

ଗଲା ସେ ଅମର ଆତ୍ମା ଛାଡ଼ି ନରକାୟା,
ଆଚ୍ଛାଦିଲା ଜଗତରେ ବିଷାଦର ଛାୟା ।

ଜାଣି ନ ଥିଲା ଯେ ହୃଦ ଭୟ ପଳାୟନ,
ମରଣେ ଯେ ଦେଖିଥିଲା ଅମର ଜୀବନ,

ଚଳିଗଲା ହସୁଁ ହସୁଁ ତେଜି ମର୍ତ୍ତ୍ୟବାସ,
ଯାର ଗୁଣଗାଥା ଏବେ ଗାଏ ଇତିହାସ ।

ଦେଖିଛତ ସେ ଘଟନା ସାର ଦୀନନାଥ,
ସତ୍ୟ ସ୍ୱାଧୀନତା ପ୍ରତି ଶାସନ ବଜ୍ରାଘାତ ।

ଶାନ୍ତି ସୁଶାସନ ନାମେ ପଶୁ ଅତ୍ୟାଚାର,
ସତ୍ୟ ସ୍ୱାଧୀନତା ଶିରେ ଉତ୍କଟ ପ୍ରହାର ।

କେତେ କାରାଗାରେ କେତେ ଘୋର ନିର୍ଯ୍ୟାତନ,
କେତେ ସାଧୁହତ୍ୟା କେତେ ସାର ନିଷ୍ପେଷଣ ।

ଷ୍ଟୁର କଦର୍ଥନେ କେତେ ହୃଦ ଖଣ୍ଡ ଖଣ୍ଡ,
କେତେ ଦେବଦୂତେ ବୃଥା ଅମାନୁଷ ଦଣ୍ଡ,

ମାନବ ସଭ୍ୟତା ମୁଖେ କଳଙ୍କ କାଳିମା
ଦେଖିଛ ସବୁତା, ତାର ନାହିଁ ପରିସୀମା ।

କହ ଦେବ ହେଲା କିବା ପରିଣାମ ତାର,
ଜଗତରେ କାହା କାର୍ଯ୍ୟ ଲଭିଲା ପ୍ରସାର ?

ଉଡ଼ୁଅଛି ଅବଶେଷେ ସତ୍ୟର ନିଶାଣ,
ବାଜୁଅଛି ସ୍ୱାଧୀନତା ବିଜୟ ବିଷାଣ ।

ହୋଇଅଛି ସ୍ୱଜଣଙ୍କ ମ୍ଳାନ କାଳଗ୍ରାସେ,
ପାଉଅଛି ଅପଯଶ ଲେଖା ଇତିହାସେ ।

ଏ ସକଳ ଗ୍ରହରାଜ କରିଛ ସାକ୍ଷାତ,
ସେନ ଦେବ ମୋର ସାନ୍ଧ୍ୟ ଭକ୍ତି ପ୍ରଣିପାତ ।

ବିଜନ ପ୍ରକୋଷ୍ଠ ଏବେ କରିବ ଆଶ୍ରୟ,
ସ୍ମୃତିରେ ସେବିବ ତହିଁ ବସନ୍ତ-ମଳୟ ।



# ବନ୍ଦୀର ସ୍ୱଦେଶ ଚିନ୍ତା

କାହାରେ ବହଇ କେତେ ସୁଶୀତଳ
ମଧୁର ମଳୟ ମୃଦୁ ମରୁତ,
ନବ ମଲ୍ଲୀକଳି ମୁଡ଼ୁକି ହସଇ
ଭ୍ରମର ଦୋଏ ପ୍ରେମେ ତା ବୃନ୍ତ ।

କବାଟ ଫାଙ୍କରେ ପଶିଲେ ବାଙ୍କରେ
ଥରେ ଥରେ ଆସେ ଶ୍ଳେଷ ପବନ
ସେ କି ଗୁପ୍ତଚର, କାହାର ଖବର
ଦେଇ ଲୁଚି ଚାଲିଯାଏ ବହନ ।

ସେ ସ୍ନିଗ୍ଧ ପରଶେ ନିମିଷ ସଂଶ୍ଳେଷେ
ତାପିତ ପ୍ରାଣ ମୋ ପୂରେ ପୁଲକେ,
କେତେ ସୁଖସ୍ମୃତି ଜାଗେ ଏ ଅନ୍ତରେ
କେତେ ସ୍ୱପ୍ନଛବି ନାଚେ ପଲକେ ।

ମନେ ଏବେ ଆସେ ତରୁଣ ବୟସେ
ବୁଲୁଥିଲି ଯେବେ ଭାର୍ଗବୀ ତୀରେ,
ପୁନାଗ ବକୁଳ- ସୌରଭ ସଂକୁଳ
ସୁବାସ ଶୀତଳ ସଞ୍ଜ ସମୀରେ ।

କ୍ଷୀଣଜ୍ୟୋତ୍ସ୍ନା ମଧେ ଖେଳେ ଧୀରେ ଧୀରେ
ସୁଚଞ୍ଚଳା ଲଘୁ ଲହରମାଳା,
ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲାଇ ଦେଇଛି କି ପଲ୍ଲୀବାଳା ।

ଗ୍ରାମ ସୀମନ୍ତିନୀ ଚହଲାଇ ପାଣି
କଳସରେ ଯେବେ ନଅନ୍ତି ଭରି,
ମାଳମଣି ଦାମ ପ୍ରାଏ ସେ ଲହରୀ
ଇନ୍ଦ୍ରଧନୁର ଛଟାଏ ଯାଏ ପ୍ରସରି ।

ଗାଈଆଳ ପିଲା ଗୋଠୁଁ ବାହୁଡ଼ାଇ
ଅଣୁଆଏ ଗାଈ ବେଣୁ ବଜାଇ,
ହାଟକାମ ସାରି ଫେରନ୍ତି ବେପାରୀ
ଭଞ୍ଜି ଚଉପଦୀ ପଦ ପକାଇ ।

ସରେଶ୍ୱରୀ ପାଶେ ଦୀପ ଦେଇ ବାସେ
ଆସନ୍ତି କୌତୁକେ କୁମାରୀ କୁଳ
କାଏ କରେ କଳି ଆନ ସଙ୍ଗେ ଖେଳି
କାଏ ବା ଗୋଠାଏ ବଉଳଫୁଲ ।

ଯାଉଁଳ କାନ୍ଧରେ କେବେ ବା ବନ୍ଧରେ
ଭଉଣୀ ଆଗରେ ଚାଲଇ ଭାଇ,
ଶାଶୁଘରେ ନଏ ସନ୍ଧ୍ୟା ଦେଖି କହେ
ଚଣ୍ଡେ ଗୋଡ଼ କାଢି ଚାଲିବା ପାଇଁ ।

ନବ ଯଉବନୀ କାଖେ ପିଲା ଧେନି
ଚାଲି ନ ପାରଇ ଜଘନ ଭାରେ;
ତା ଚାହିଁ ଚପଳ ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।

କେତେକ ଅଡ଼ୁ ଉଡ଼ି ଆସନ୍ତି ବାଦୁଡ଼ି
ଝୁଲନ୍ତି ପୁନାଙ୍ଗ ଫଳିତ-ଶାଖେ,

ନଦୀ ତଟେ ନଟେ ଚାତଦ ପ୍ରକମ୍ପେ
ଚପଳାଙ୍ଗୀ ସ୍ୱଚ୍ଛେ ଚମକ ପାଖେ ।

କାନ୍ଦି ନଦୀନାଳ ପିଲ ଟୋକା ଦଳେ
ଗୋଳନ୍ତି ଗୋବର ଦେଖାନ୍ତି ଦୁଳା,
ମାଛ ଧରିବାର କରନ୍ତି ବସ୍ୱର
ଦେଇ କାନଶିଅ ବାଳ ଢ଼ମ୍ବୁର ।

ଖିର ସଢକରେ ଅଜ ପିଲ କେତେ
ଟେଳୁଥାନ୍ତି ଜଂଛ ଟେକଣ ଗଧା,
ଗୁଡ଼ଆଦାଣ୍ଡରେ କେ କାହାକୁ ମାରେ
କଏ ହସି ପୁଣି ଦେଖାଏ ବାହା ।

ହଳ ଲେଉଟାଇ ଆସୁଥାଏ ଯେଉଁ
ମୂଣ୍ଡେ ଘାସଗୋଛୁ ହାତେ ପାଞ୍ଚଣ
ବଳଦ ଜଡ଼ାଇ ଡାଏ କେବେ ଗାଇ
"କାହିଁ ଗୁଡ଼ିଗଲୁ ରୁ ଲକ୍ଷଣ !"

ବାଟୋଇ ଭ୍ରାନ୍ତ ବଷ୍ଟରୁ ଉଭୁର
ଆଶ୍ରୟ ଆଶାରେ ଗ୍ରାମରେ ପଶେ
ହୁଏ ଯନ୍ତି ନୀତ ଜଗେ ଭାଗବତ
ଶୁଣିବାକୁ ଚନ୍ଦ୍ରି ପିଣ୍ଡାରେ ବସେ ।

ଚଉପାଏ ଲକ୍ଷମ ଘରକଥା ମନେ
ଅତିଥି ଆଦର ଦେବ ଅର୍ଚ୍ଚନା,
କାବଗାର କକ୍ଷେ କମ୍ପାଳି ଏ ବକ୍ଷେ
ଆଣିବ ଆଜ ସେ ବୃଥା ଭାବନା ?

ବନ୍ଦୀର ସ୍ୱଦେଶ ଚିନ୍ତା

ହେ ବସନ୍ତବାତ ମୋ ଦ୍ୱାରେ ଆଘାତ
କର ଭଲା ଆଜ ଥରେ ସଦୟେ,
ଦକ୍ଷିଣ ଦିଗର କହ ସମାଚାର
ସିଞ୍ଚ ଶାନ୍ତି-ସୁଧା କ୍ଷଣେ ହୃଦରେ ।

ମୋର ପ୍ରିୟସ୍ଥଳୀ କେତେ ନଈକୂଳ
ଜାଣିଥିବେ ତବ ଆସିବା ବାଟେ,
ଦେଖିଥିବେ ପର କେତେ କି ବାରତା
ଶୁଣାଅ ମନ ମୋ ଅଛି ଉଚ୍ଚାଟେ ।

କଢ଼ିଥିବ ଭେଟ ମଞ୍ଜୁଷା-ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ ନାଚିଥିବ ପ୍ରେମେ
ଦୋଇଲାଇ ତରୁ ଭୁଜସଙ୍କୁଳ

ରସନା ନୟନ ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ-ମଣ୍ଡନ ସୁରମ୍ୟ 'ଉଦ୍ୟାନ'
ଦେଇଥିବ କେତେ କି ଉପହାର ।

ଆମ୍ବ ରମ୍ଭା ବେଲ ଲେମ୍ବୁ, ନାରିକେଳ
ପଣସ ସପୁରୀ ଖଜୁରୀ ତାଳ,
ବଧିରକ୍ଷା ପାଇଁ ଆସିଥିବ ତୁହିଁ
'ଉଦ୍ୟାନ'ର ନାନା ଫଳ ରସାଳ ।

କୃଷ୍ଣୋଦକ ଋଷି- କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ ।

ଖରବାପୀଙ୍କର ରଗିଣୀ ମଧୁର
ଶୁଣିଥିବ ତମ୍ଭେ କ୍ଳାନ୍ତ ଗାଥ ।

ଆଲିଙ୍ଗନ ଆଶେ ତବ ତଟପାଶେ
ଶଳିକା ଆବେଗେ ଥିବ ଅନାଇ,
ମୁକ୍ତାଳକେଶୀ ଶ୍ୟାମଳଶୋଭାବତୀ-
ଗିରି ନିମ୍ନ-ସ୍ଥିତ ବକ୍ଷ ମେଲଇ ।

ଚଞ୍ଚଳ ହିଲ୍ଲୋଳେ ଦୃଢ଼ ତଟସ୍ଥଳେ
ଚୁମ୍ବିଥିବ ଯେବେ ଗାଢ଼େ ସମୀର,
ସୁନ୍ଦର ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।

ପୁଳିନ କାନନେ ସନ୍ଧ୍ୟା ସନସନେ
ଫେଳି ଯାଉଥିବ ପ୍ରେମ-ଲହରୀ,
ହଳିଯାଉଥିବ କେତେ କେତେ ନାବ
ଦେଖୁଥିବ ତନ୍ଦ୍ରଦୂରେ ଯୋଲଣ

ମାଛରଙ୍କା ହଂସ ଚକ୍ରାକ ସାରସ
ନାନା ଜାତି ଖଗ ଖେଚର ମାଳ,
ଶଳିକା ବକ୍ଷରେ ଦୋଳିଥିବ ଯଥା
ନୀଳମେଘେ ଧାଡ଼ି ଧାଡ଼ିବକାଳ

ଫେଡ଼ି ମୀନ ଦେହ ଉଲଟାଇ ଗାହ
ରଶ୍ମିମାଳାବଳକୁ ଶଳିକା ପୁଣ,
ଶୈଳ ପ୍ରତିଘାତେ ଶରମେ ଭୂଶତେ
ରକ୍ତାକ୍ତ ବଢ଼ାଇ ଗତି ଦ୍ୱିଗୁଣ ।

## ମୋର ସ୍ୱଦେଶ ଚିନ୍ତା

ଆସିଥିବ ଭକ୍ତ — ଭ୍ରମେ ପଥ ମୁକ୍ତ
ସିଦ୍ଧ ସଇକତେ ଶ୍ରୀକ୍ଷେତ୍ରଧାମ,
ପୁଣ୍ୟ ନୀଳାଚଳେ — ମହୋଦଧି ଜଳେ
ସ୍ନାନ ହୋଇଥିବ ଶୁଚି ଆତ୍ମେ ।

ସାଗର ସ୍ୱଚ୍ଛନ୍ଦ — ଭଙ୍ଗ ତାଳବୃନ୍ଦେ
ତାଳ ଲଙ୍କାଅମ୍ବ ଗୁମ୍ଫା ଉଦ୍ୟାନରେ
ନୀଳାଚଳପତି — ଚମ୍ପୁରେ ପ୍ରଣତି
କରିଥିବ ଜଣେ ଦକ୍ଷିଣ ଦ୍ୱାରେ ।

ଶ୍ରୀପଦ ଭୂଷଣୀ — ଶିଳରେ ପରଶି
ଲଭିଥିବ ମହାମୋଦ ଅନ୍ତରେ,
ନୀଳଚକ୍ର ଚୂଳ — ପ୍ରେମ ଭକ୍ତିଯୋଗେ
ଦେଇଥିବ ନେତ୍ର-ଜଳ ଇ ଥରେ ।

ପୁଣ୍ୟ ଗନ୍ଧବହ, — କର ଅନୁଗ୍ରହ
କହ ପ୍ରିୟ ପୁଣ୍ୟ ସୁସମାଚାର,
ନଗର ନିବାସୀ — ପ୍ରଭୁ ବ୍ରହ୍ମଋଷି
କରୁଛନ୍ତି ଏବେ କେଉଁ ବିଚାର ?

ଗମ୍ଭୀରରୁ କିବା — ଶ୍ରୀମୁଖ ଆଦେଶ
ପଠାଇଅଛନ୍ତି ଦେବ ମୋ ପାଇଁ
କହ ବେଗେ ବାୟୁ, — କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ?

ନୀଳାଚଳବାସୀ — ମୋତେ କି ଆଶ୍ୱାସି
କହିଛନ୍ତି କିଛି ଶୁଭ ବାରତା,

ସାଧାରଣ ସନ୍ଥ  ସେବକ ମହନ୍ତ
ପକାନ୍ତ କି କେବେ ସ୍ୱରାଜ୍ୟ କଥା ?

ସାଶ୍ରଦରଶନ  କ୍ଷେତ୍ର ପ୍ରଦକ୍ଷିଣ
କରିଥିବ ପୁଣି ଉତ୍ତରଗତ
ଅଟକାଇଥିବେ  ପଥରେ ଟିକଏ
ସତ୍ୟବାଦୀ କୁଞ୍ଜେ ତରୁବ୍ରତତି ।

ସୁମଧୁର ତାନେ  ତବ ଆବାହନେ
ଗାଉଥିବ ପିକ ସ୍ୱାଗତ ଗୀତ,
ବକୁଳ ତମାଳ  ଦେଉଥିବେ ତାଳ
ପୂରି ଉଠିଥିବ ପରମ ପ୍ରୀତି ।

ଦେଉଳେ ପ୍ରବେଶି  ଗୋପୀନାଥ ବଂଶୀ-
ରନ୍ଧ୍ରେ ରଚିଥିବ ଅପୂର୍ବ ସ୍ୱନ,
ରାଧିକା ଅଞ୍ଚଳ  ଉଡ଼ାଇ ଚଞ୍ଚଳ
କରୁଥିବ ଜାଣି ବେନିଙ୍କ ମନ

ହସି ଉଠିଥିବେ  ଯୁଗଳ ମୂରତି
ଖସି ପଡ଼ୁଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ ଶିରେ  ଆହା କି ରୁଚିରେ
ହଲୁଥିବ ତାଙ୍କ ମୟୂରଚୂଳ ।

ବଉଳ ସେବତୀ  ମରୁଆ ମାଳତୀ
ଚମ୍ପା ନାଗେଶ୍ୱର ଯାଇ ଦଅଣା,
ଚହଟାଇ ବାସ  ତବ ଚଉପାଶ
କରୁଥିବେ ଗନ୍ଧବ୍ୟୂହ ରଚନା ।

ବିରଜ-ବିହାରୀ   ଯୋଗୀ ମନୋହାରୀ
ଯୁଗରେ କରନ୍ତି ଯହିଁ ବିହାର,
କି ଉପମା ତାରେ   ଯେସନ୍ତ ସୁଷମାରେ
ସେହି ସ୍ଥାନ ପଟାନ୍ତର ତାହାର ।

ବସନ୍ତ ମାଧୁରୀ   କୁଞ୍ଜ କୁଞ୍ଜ ପୂରି
ଖେଳୁଥିବ ଯହିଁ ଉଛୁଳ ସତେ,
ଦେବଦତ୍ତ ଧାମ   ମୋ ପ୍ରିୟ ଆଶ୍ରମ
ପଡ଼ୁଛି କି ତବ ନୟନ ପଥେ ?

ମୋ ସଖା ସୋଦର   ପ୍ରିୟ ସହଚର
ଅନ୍ତେବାସୀ ବନ୍ଧୁ ପଡ଼ୋଶୀଗଣ
ଅଛନ୍ତି ତ କୁଶଳେ   ସରସ ହୃଦୟେ
ଲବଣ ବିଷଣ୍ଣ ନୁହେଁ ବଦନ ?

ସହ୍ୟବାସୀ କୁଞ୍ଜ   ଦ୍ରୁମଅଳା ପୁଞ୍ଜ
ଜାଣିଥିଲେ ଏହି ତବ ସଞ୍ଚାର,
ଅବଶ୍ୟ ମୋ ପାଇଁ   ଥିବେ ପଠିଆଇ
ମୃଦୁ ମଧୁମୟ ଗନ୍ଧ ସମ୍ଭାର ।

ଗନ୍ଧବହେ ଭଦ୍ର   ଆସିଥିବ ଯଦି
ଧୀରେ ଧୀରେ ସିଧା ଉତ୍ତର ଦିଗେ,
ଲଙ୍ଘି ବନ ଗ୍ରାମ   ଜଳ କି ବିଶ୍ରାମ
ନିଳାଚଳ ଦେବ ଦେଉଳ ଶିଖେ ।

ସର୍ବତ୍ରାସୀ କାଳ   ପ୍ରାଚୀନ ଉତ୍କଳ
କଳା କଉଶଳ କରେ ଗରାସ,

ବୈଭବ କଙ୍କାଳ ଶଟ୍ଲକ ଅନଳ
ପାଇଥିବ ପ୍ରାଣେ ଘୋର ତ୍ରାସ ।

କେତେ ଚମତ୍କାର ମନୋଜ୍ଞ ମନ୍ଦିର
ମିଶିଛି ମାଟିରେ ପଡ଼ିଛି ପଦା;
ଖଣ୍ଡ ଖଣ୍ଡ ଶିଳା ଖସି ଜାହାଦେହୁଁ
ଜମା ହୋଇଅଛି ପଥରଗଦା ।

ଶିଳ୍ପ ପିଣ୍ଡି ସୀମା ପାଷାଣ ପ୍ରତିମା
ଭଙ୍ଗିଅଛି ମୁଖ, ଛୁଟିଛି କର,
ପଡ଼ିଅଛି ବାଟେ କବା ବଣ ପାଟେ
ହୋଇଅଛି କାହିଁ ଭୂଠ ପଥର ।

ହଳ ମୁଦ୍ରନ ଖେତେ ବାହାରନ୍ତି କେତେ
ଖୋଦିତ ଅଖଣ୍ଡ ଅପୂର୍ବ ମୂର୍ତ୍ତି,
ଛୁଟି ନାହିଁ ଜଳେ ଲାବଣ୍ୟ ସୁଷମା
ପ୍ରକାଶେ ସର୍ବାଙ୍ଗେ ଜୀବନ୍ତ ସ୍ଫୁର୍ତ୍ତି ।

ସ୍ନେହରେ ଦକ୍ଷ ଶିଳ୍ପୀ ମନେ କ ଭକ୍ତି
ଯଦ୍ୟ ଓଡ଼ି ରଖିଗଲା ଗୋପନେ,
କ ଅବା ମେନକା ରଚିଗଲା ଏକା
ଶିଶୁ ଶକୁନ୍ତଳା ଚିଙ୍ଗି ଭଜନେ

ନୃପତି ନବର- ପତନ ପ୍ରାଚୀର
ଧଣ୍ଡାର ଦେଖାଏ ମୃତ୍ତିକା ସ୍ତୂପ,
ଲତା ଗୁଳ୍ମରାଶି ଗଲଣି ଗରସି
କେତେ ସୁଗଠିତ ତଡ଼ାଗ କୂପ ।

କେତେ ଗୁଡ଼ ବଂଶ        କେତେ ଶିବଲିଙ୍ଗ
ଦେଉଳମାଳ କାହିଁ ତା ପରିଚୟ ?
ରହିଛି କେବଳ        ଐଶ୍ୱର୍ଯ୍ୟର ଛାୟା
କି ବିଭବ ଆହା କି ବୀର୍ଯ୍ୟମୟ !

ବାହ୍ୟ ଐଶ୍ୱର୍ଯ୍ୟ        ମଧ୍ୟେ ଧରି ଧୈର୍ଯ୍ୟ
ଏ ଘୋର ଜଙ୍ଗଲର ଭୂଇଁ ମନ୍ଦିର,
ମହା ଶମଶାନେ        ଯଥା ବାସବେ
ଯୋଗାରୂଢ଼ କଳ୍ପ ଯୋଗୀ ଶଙ୍କର ।

ଶୈବାଳଆବୃତ        ବିବର୍ଣ୍ଣ ବିକୃତ
ଧରିଛି ବିରାଟ ଉନ୍ନତ କାୟା,
କର୍ମର ହ୍ରାସେ        ସ୍ୱର୍ଗହିଁ ଚଉପାଶେ
ଢୁଣ୍ଟାଇଛି କି ସେ ଏ ଭବମାୟା ?

ସେ ଉଚ୍ଚ ଉଦାର        ପୁରାଣ ପ୍ରବର
ସଦାଶିବ କଳ୍ପ ଶିବମନ୍ଦିର,
ବିପୁଳ ଅକୃତ୍ତ        ବାଲୁକ ପ୍ରଦେଶ
କରଇ ପୂଜା ପାଦେ ସମୀର ।

ବେଶୀ ବେଳ ଚିହ୍ନି        ନ ଥିବ ତ ରହି
କଏ ସେ ରହିବ ହୃଦୟ ବାନ୍ଧି ?
ସେ ବିଷାଦମୟ        ଭଗ୍ନ ଦୃଶ୍ୟଚୟ
ଦେଖି କାହା ଛାତି ପାରିବ ସହି !

ମେଘୁ ସୁକଲ୍ୟାଣ        ଯେବେ ସମୀରଣ
ବହୁଥିବ ପୁଣି ଗତ ଉତ୍ତରେ,

ଦ'ହେଣ୍ଡ ଯାଉ-  ଥିବ ବା ନ ଥିବ
ଭେଟିଥିବ ଖଣ୍ଡଗିରି ପଥରେ ।

ଦେଖି ନାହିଁ କେବେ  ଦନ୍ତୁ ଖଣ୍ଡଗିରି
ଲେଖିଥାଏ ଯାର ଅଙ୍କେ ଅଙ୍କିତ,
ଅମର ଅକ୍ଷରେ  ଶାରଦ-ଗୀତିରେ
ଗାଏ ଯେ ଉତ୍କଳ-ଗୌରବ ଗୀତ ।

ପଡ଼େ ଏବେ ମନେ  ପ୍ରଥମ ଯୌବନେ
ଭ୍ରମେ ପିପାସା ଭାବ ଉନ୍ମାଦେ
ଖଣ୍ଡଗିରି ଶିରେ  ଦେଖି ମେଘ ଭରି
ଚିନ୍ତା ନମଗଲେ ବସିଲି ପାଦେ ।

କଳ୍ପନାର ସୋତେ  କାଳ ଧ୍ୱଂସ ସ୍ରୋତେ
ଭାସି ଦେଖିଲି ମୁଁ ଉତ୍କଳ ଛବି,
ଇତିହାସ ଯାହା  ନ କରେ ପ୍ରଚାର
ଚିତ୍ର ନାହାନ୍ତି ଯା କାବ୍ୟରେ କବି ।

କାଳର ପ୍ରଭାବେ  ଜନ ସ୍ମୃତିପଟେ
ଲୁପ୍ତରେଖ ଯାର ଲଭୁଛି ଅନ୍ତ,
କଳିଙ୍ଗର ଶ୍ରେଷ୍ଠ  ଅଶୋକ ବିଜୟ
ଶ୍ରୀଯ ଖାରବେଳ ଶାସନଶଙ୍ଖ ।

ବାଜେ ବୀରବାଜା  କାହିଁ ରଣସଜ୍ଜା
କାହିଁ ବା ଲଗିଛି ଗୁପ୍ତ ମନ୍ତ୍ରଣା,
ଦୂରଦେଶୁଁ ଦୂତ  ବାଣିଜ୍ୟ-ବାରତା
ଘେନିଆସି କରେ ସ୍ତମ୍ଭରେ ଜଣା ।

ଶ୍ରାମଣ ସନ୍ନ୍ୟାସୀ ଦଳେ ଦଳେ ବସି
ଶୁଣୁଅଛୁ କାହିଁ ଚୈତ୍ୟଗୃହ,
ଗମ୍ଭୀର ନିର୍ଘୋଷେ ଲୋକ ଉପଦେଶେ
କାହିଁ ବା ଅହିଂସା ଧର୍ମପ୍ରଚାର ।

ଖଣ୍ଡଗିରି ଅଙ୍ଗେ ଶିଳ୍ପୀ ଶତ ଶତ
ଖୋଳନ୍ତି ଅଦ୍ଭୁତ ଗୁମ୍ଫା ନିରତେ,
କାହିଁ ଗୁପ୍ତଚର ରାଜ୍ୟ ସମାଚାର
ଏକାନ୍ତେ ଜଣାଏ ନୃପପ୍ରବରେ ।

କଳ୍ପନାର ନେତ୍ରେ ଏହିପରି କେତେ
ଦିଶେ ଚିତ୍ର ଖଣ୍ଡଗିରି ଶରୀରେ,
ଅନନ୍ତ ସର୍ବସ୍ୱ ବୃଦ୍ଧ ଖଣ୍ଡଗିରି
ରହିଛି ପଡ଼ିଏ ଉଦାସ ଗମ୍ଭୀରେ ।

ମହାକାଳ ସ୍ରୋତେ ବୁଦ୍‌ବୁଦ ପ୍ରାଏ
ଯାଇଅଛି ମିଶି କଳିଙ୍ଗ-ଭୂତି,
କଳିଙ୍ଗ-ସନ୍ତାନ ଭୁଲିଛନ୍ତି ଏବେ
କଳିଙ୍ଗର ନାମ ଗୌରବ ସ୍ମୃତି ।

ତଥାପି ସେ ଗାଥା ରଖିଅଛି ଗିରି
କାଳ ପରାଭବେ ଦେଖାଇ ହିଆ,
ଛିନ୍ନ ଛାରଖାର ରାଣୀହଂସପୁର
ସାକ୍ଷ୍ୟ ଦେବାଲାଗି ଅଦ୍ୟାପି ଠିଆ ।

ଚୂଡ଼ୁଁ ମୂଳଯାଏ ଶୋଭେ ଶିଳାଖାସ୍ତେ
ପ୍ରାସାଦ ପ୍ରାଙ୍ଗଣ ଗୁମ୍ଫା ଦେଉଳ,

ଚତୁଷ୍କତା ଦଳ  ବୋଧିଛନ୍ତି ପଥ
ନବସନ୍ତ ପନ୍ଥୁଁ ଶ୍ୱାପଦକୁଳ ।

ପଦପ୍ରାନ୍ତ ବାସୀ  ସଧୁ ଧର୍ମବେଶୀ
ବଖାନ୍ତି ଅଦ୍ଭୁତ ବହୁ କାହାଣୀ
ଦେଖାନ୍ତି ଶ୍ରୋତାଙ୍କୁ  ପ୍ରତ୍ୟକ୍ଷ ପ୍ରମାଣ
କେତେ ଜୀର୍ଣ୍ଣମୂର୍ତ୍ତି କଠାଉ ଆଣି ।

ତାପସ ସାଧକ  ଅଦ୍ୟାପି ଅନେକ
ନିବିଡ଼ ଅନ୍ଧାର ଗୁମ୍ଫା ଗହ୍ୱରେ,
ଲୁଚି ରହିଛନ୍ତି  ଗଭୀର ନିଶୀଥେ
ଶୁଣାଯାଏ ତାଙ୍କ ସଙ୍ଗୀତ ନଭେ ।

ଶୁଣିଛି ମୁଁ ନିଜେ  କହନ୍ତି ସେ ଲୋକେ
ପଥିକ ବଦନେ ଦେଖି ସଂଶୟ,
ନୁହେଁ ତା ବଚନ  ବାଦ୍ୟ ବଶେ ମାତ୍ର
ପ୍ରତିଫଳେ ନର ନିଜ ହୃଦୟ ।

ଅତିଥି ଆଦରେ  ଅତି ଆଗ୍ରହରେ
କରିଥିବ ଋଷିଗଣ ବନ୍ଦନ,
ବନ ଉପତ୍ୟକା  ଗୁହା ଗର୍ଭେ ଏକା
ସ୍ୱଚ୍ଛନ୍ଦେ ସଞ୍ଚରିଥିବ ପବନ ।

ତବ ଆଗମନ  ସନସନ ସ୍ୱନ
ଶୁଣି ଗିରିଗୁମ୍ଫା ଦରୀ-କନ୍ଦର,
ଗାଉଥିବ ଗୀତ  ଗୌରବ ସଙ୍ଗୀତ
ତୁମ ସ୍ୱର ସଙ୍ଗେ ମିଳାଇ ସ୍ୱର ।

ପୂର୍ବ ସୁଖସ୍ମୃତି ଦୁଃଖେ ମନେ ଆସେ
ବଢ଼ାଏ ବିଷାଦ ଦ୍ୱିଗୁଣ ପ୍ରାଣେ,
ତଥାପି ଉଷତ ବିଷାଦ ସଙ୍ଗୀତ
ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।

ବନ୍ଧ ସମୀରଣ କଲ କି ଦର୍ଶନ
ଶୁଦ୍ଧ ସାଧ୍ୱୀ ଅମ୍ବା ଗୃହ ଦ୍ୱାର,
ଚନ୍ଦ୍ରଗିରି ଚୂଳେ ବହଳ ଅଶୋକେ
ଯା ଅମର ସୁଧା ସଙ୍ଗୀତ ଧାର ।

ଏ ମୋ କାରା ଦ୍ୱାରେ ଲଗିଯାଅ ବାରେ
ସେ ଦୂର ସଙ୍ଗୀତ ଶୁଣୁ ମୋ କାନେ,
କମ୍ପି ଉଠୁ ମୋର ହୃତ-ବୀଣା ତାର
ମୋ ଅନ୍ତର ଧ୍ୱନି ମିଶୁ ସେ ତାନେ ।

କି ଦେଖିଲ ଆଜ ହେ ବନ୍ଧୁ ବାୟୁ
କହ ବେଗେ କର ନାହିଁ ଛଳନା,
ତୁମ୍ଭେ କି ନ ଜାଣ ନିର୍ବାସିତ ପ୍ରାଣ
ସ୍ୱଦେଶ ସନ୍ଦେଶେ ପାଏ ସାନ୍ତ୍ୱନା ।

ଖଣ୍ଡଗିରି ପରେ ଉନ୍ମୁକ୍ତ ଆମ୍ବରେ
କରିଥିବ ନବମେଘ ରଚନା,
ବାଟରେ ଅଟକ ଦଲ କି କଟକ
ମହାନଦୀ ନୀଳ ନୀର-ବସନା ।

ଉଦ୍‌ବେଗ ବାହାନା କରିଥିବ ସିନା
ଉପେକ୍ଷି ନ ଥିବ ତା ସମାଦର;

ଯେ ଯେତେ କର୍ମଠ କରେ ଷଣ୍ଡ ମଠ
ପ୍ରେମ ପାଶୁଁ ହେବାବେଳେ ଅନ୍ତର

ଫୁଲଜଡ଼ିଥିବ ମହାନଦୀ ବକ୍ଷ
କମ୍ପି ଉଠିଥିବ ଲକ୍ଷ ବେହାର,
ଘଟା ଝଡ଼ପନ୍ତ ଥିବେ ମଥା ପୋଷ
ମୃଦୁ ହାସେ ଦେଖି ଅଙ୍ଗ ବିକାର ।

ଦେଖିଥିବ ଚନ୍ଦ୍ରି ବାରବାଟି ଦଶା
କି ବେଦନା ଥିବ ମରମେ ବାଧି,
ଉତ୍କଳର ବୀର- ବିହାର ପ୍ରାଙ୍ଗଣ,
ଏବେ ସେ ଉତ୍କଳ-ସୌର୍ଯ୍ୟ ସମାଧି ।

ଥିଲା ଦିନ ଯେବେ ନବଟକ ହର୍ମ୍ୟ
ସୁଧଯାଷୀ ରଜା ମେଲୁଣି କାଳେ,
ଆଣି ନଦୀ ନୀର ସିଞ୍ଚନ୍ତି ସମୀର
ସ୍ୱେଦବିନ୍ଦୁ ସିକ୍ତ ମହିଷୀ ଗାଲେ ।

ସ୍ନେହ ସୁଧାବିନ୍ଦୁ ଯେତେ ମୁଖଇନ୍ଦୁ
ମଣ୍ଡିଲ ପ୍ରହରୀ ନେତ୍ର ଯୁଗଳେ,
କଞ୍ଚୁ ସୁଶୀତଳେ ହେଲେ କୌଶଳେ
ନ ପକାଇ ମୁକ୍ତାଫଳକ ତଳେ ।

ଯେବେ ରଣଜିତ ଫେରେ ଗଜପତି
ବାହୁବଳେ ହେଲା ଜୟ ଘୋଷଣା
ଅଳକଗଣ ମିଳି ଧରେ ଅର୍ଘ୍ୟଥାଳୀ
କଲେ ବନ୍ଦାପନା ବୀର ଅଙ୍ଗନା ।

ବାଜିଲା ମଦ୍ଦଳ    ଶଙ୍ଖ ଘଣ୍ଟ ତୂରୀ
ଉଡ଼ିଲା ଅମ୍ବରେ ଜୟ କେତନ;
ସେ ବିଜୟ ଘୋଷ    ମେଲି ଦଶଦିଶ
ମୋହିଲା କେତୁ ଭୁବନ ପବନ ।

ବନ୍ଦୀ ହେଲା ଯାଏ    ନନ୍ଦିଲେ ପୁଣି
ଉଡ଼ାଇଲେ ବାମା ମଥା ଓଢ଼ଣା,
ଚିର ଧୃଷ୍ଟପଣେ    ଧୂଳବଟ ପ୍ରାଣେ
ଦେଲେ ବ୍ୟାଜଗାଳି ବରବର୍ଣ୍ଣା ।

ବାରବାଟି ଅଙ୍ଗେ    ସେ ସୌଭାଗ୍ୟ ରଙ୍ଗେ
କମ୍ପିଥିଲା ଅଭିନବ ପବନ ,
ଆଜି ତ ଦେଖୁଛ    ସେହି ବାରବାଟି
ଦେଖିଲ ସତ୍ୟ କି ଅବା ସ୍ୱପନ ।

ନ’ତଳ ପ୍ରାସାଦ    ସେ ଶୌର୍ଯ୍ୟ ସମ୍ପଦ
ବିଜୟ ବାଜଣା ବିଜୟ ଧ୍ୱଜା,
ସାର କବିତାର    ଧୈର୍ଯ୍ୟ ସମାଦର
ଉତ୍କଳର ସାର ବିକ୍ରମୀ ପ୍ରଜା ।

ବାରବାଟି ଗଡ଼େ    କେଉଁପଥେ ଚଢ଼େ
ଏବେ କି ସେ ପୂର୍ବ ଦୃଶ୍ୟଚୟନ,
ପ୍ରତିବିମ୍ବେ ଶୋଭେ    ପ୍ରତିନାଦେ କମ୍ପେ
ଆଜି କି ସରତ ହୃଦ-କମଳ ।

କରପୂର ଉଡ଼ି    କନା ଥିଲେ ପଡ଼ି
କନା ରଖିଥାଏ କର୍ପୂର ମୂର୍ତ୍ତି;

ଜନା ଯାଇ ନାଶ                    ରହିଲେ ପାଉଁଶ
ଧରିବ ତା ଦେଖି କଏ ସେ ଧୂର୍ତ୍ତ ।

ଉଚ୍ଚ ମାଟିଗଦା                    ରୁକ୍ଷ ରକ୍ତ ପଦା
ପ୍ରାଚୀନ ଜାତିର କ୍ଷେତ୍ର ଶ୍ମଶାନ,
ନିରେଖି ମନସ୍ତ                    ସଦୟ ହୃଦୟ
ଯୋଗ କରିଥିବେ ଶୋକେ ସମ୍ମାନ ।

ସେ ମୃତ୍ତିକା ସ୍ତୂପ                    ଶିରେ ଶ୍ୟାମଶଷ୍ପ
ଚୁମ୍ବିଥିବ ଅଶ୍ରୁପ୍ଲୁତ ନୟନେ,
କାଳଗ୍ରାସ ନାଶ                    ଉଜ୍ଜ୍ୱଳ ପୌରୁଷ
କଳ୍ପିଥିବ ତହିଁ ଧନ୍ୟ ଶୟନେ ।

ମହତ ନିଧନେ                    ସେ ମହତ ସ୍ଥାନେ
ପଡ଼ିଥିଲେ କ୍ଷୁଦ୍ର ଧୂଳିକଣିକା,
ଭକତି ଆଦର                    କରେ ଯେ ତାହାର
ସେ ଢ଼ଏ ମହତ ହୃଦୟ ଶିକ୍ଷା ।

ଚନ୍ଦ୍ର ମୃଦ ଓଁଠେ                    ଅଭାଗ୍ୟ ମୂଳକେ
ଚଳିଥିବ ତଳଦରେ ସଙ୍ଗୀତ,
ଦାବାନଳ ସବ                    ପରୁଷ ପ୍ରବାହ
ତାପୁଥିବ ବନ ଶଇଳ ଦଣ୍ଡ ।

ଯେ ସଇଜ ପ୍ରଜା                    ନିତ ବଳ ଶ୍ରେଷ୍ଠା
ଦେଇ ଅତି ଉଦ୍ୟ କାଠମ୍ରି ଜନ,
ଜଥା କଳ୍ପବାର                    ନାହିଁ ଅଧିକାର
ଥୁଡେଁ ଧନପ୍ରାଣ ନିଜ ଅଧୀନ ।

ଯହିଁ ରାଜବଂଶେ    କ୍ଷୀଣ ପୁଣ୍ୟବଶେ
ହନେ ନାହିଁ କାହିଁ ଭାଗ୍ୟ ଲକ୍ଷଣ,
ତଥାପି ତୁରଙ୍ଗ    ମଦେ ମତ୍ତ ସର୍ବେ
ନ ଦେଖନ୍ତି ଥରେ ଫେଡ଼ି ଈକ୍ଷଣ ।

ନଦୀଘେ ଶଇଳେ    ଦାବାନଳ ଜଳେ
ପ୍ରଜାପୁରେ ଜଳେ ବରଷ ସାରା,
ଛୁଡ଼ ପଶୁ ବନ    ଯାଏ ଆନ ସ୍ଥାନ
ପ୍ରଜା ବାପୁଡ଼ାର କାହିଁ ସେ ଗୃହ ।

ପ୍ରସରେ ସ୍ୱଚ୍ଛନ୍ଦେ    ଯହିଁ ଗିରିପଦେ
ଝରନ୍ତର ସ୍ୱଚ୍ଛ ନିର୍ଝର ଧାର,
ଶୁଭ୍ର ଜ୍ୟୋତ୍ସ୍ନା ନିଭ    ବହେ ନିରବଧି
ବନକଣ୍ଠେ ଯଥା ହୀରକହାର ।

ପିକ ଚକ୍ରବାକ    ହଂସ କାରଣ୍ଡବ
ଶୁକ ସାରୀ ଯହିଁ ଗାଆନ୍ତି ନିତି
ନାନା ଫଳ ଫୁଲ    କାନନ ମଞ୍ଜୁଳ
ଜନମାଏ ପ୍ରାଣେ ପ୍ରବଳ ପ୍ରୀତି ।

ଶୁଭ୍ର ଶତଦଳ    ସରେ ଢଳଢଳ
ମଞ୍ଜୁ ଗୁଞ୍ଜେ ଅଳି ଅସ୍ଫୁଟ ସ୍ୱନେ,
ଯହିଁ କୃଷ୍ଣସାର    କରନ୍ତି ବିହାର
ସ୍ୱଚ୍ଛନ୍ଦେ ଚଟିମା ଶର କାନନେ ।

ମାଳତୀ ମାଧବୀ    ସର୍ବଦା ସାଧବୀ
ଦେବଦାରୁ ଶାଳ ଭୁଜ ଆଶ୍ରୟେ,

ସୁଗୃହିଣୀ ସମ          ଦିଅନ୍ତି ଆଗମ
ସ୍ନିଗ୍ଧ ସୁସ୍ୱାଦାନେ ପାନ୍ଥ ହୃଦୟେ ।

ଶସ୍ୟ ଆଭରଣେ          ଯହିଁ ଅନୁକ୍ଷଣେ
ଦିସେ ସଦା ମହୀ ସ୍ନିଗ୍ଧ ଶ୍ୟାମଳା,
ମାନବ ମାଧୁରୀ          ଧରଇ ସ୍ୱରୂପ
ପ୍ରକୃତି ସହଜ ସୁଷ୍ଠରେ ଉଜଳା ।

ଶୁଭ ଶୋଭାମୟ          କମଳା ଆଳୟ
ପ୍ରକୃତି ପ୍ରକାଶ ଅତି ଉଚିତ,
ଶାସକ ସ୍ୱଭାବ          ଯିବା ଯହିଁ ସବ
ସ୍ୱରଗ ସୁନ୍ଦର ଭାବେ ଗଢ଼ିତ ।

ବନ୍ୟ ବନାନ୍ତରେ          କନ୍ଦରୁ କନ୍ଦରେ
ଅବାଧେ ବିହରୁଥିବ ସେ ଦେଶେ,
କାହିଁ ଗୁଳଗୁଳ          କାହିଁ ବା ଶୀତଳ
କାହିଁ ରହୁଥିବ ହିଙ୍ଗୁଳା ବେଶେ ।

ପଥ କୁଟା କାଠି          ଧୂଳି ନାଳି ମାଟି
ଚଷ ଆବର୍ଜନେ ଉଡ଼ାଇ ନଭେ,
ଉତ୍ତର ମୁଖରେ          ଆପଣା ସୁଖରେ
ବହିଁଥିବ କାହିଁ କ୍ରୀଡ଼ାସରଭେ ।

ଅନାସ୍ଥ ମୂଳକ          ପ୍ରଜା ସୁଖଦୁଃଖ
ନ ଦେଖି ଆସିଛ କହ ପବନ,
ସତ୍ତ୍ୱ ନାନା ଦଣ୍ଡ          ଦିଅନ୍ତି କି ଚଣ୍ଡ
ଆସିଅଛୁ କିବା ନବ ଚେତନା ।

## ବନ୍ଦୀର ସ୍ୱଦେଶ ଚିନ୍ତା

ସହି ଖର ବର୍ଷା ଦୁଃଖେ ପଡ଼ି ଚଷା
ଆପଣା କ୍ଷେତରେ କରେ ଯେ କୃଷି,
ନୋହି ଉପସ୍ଥିତ ଯେଣୁ ଦାସ ସୁତ
ଖାଏ କି ସ୍ୱଚ୍ଛନ୍ଦେ ଅନ୍ନ ଗରସ ।

କେହି ରାଜା ଜଣେ ଚିତ୍ତରେ କି ଗଣେ,
'ପରଜାଏ ମୋର ପୁତ୍ର ସମାନ',
ପରଜାଙ୍କ ହିତ ମୋ ଜୀବନ-ବ୍ରତ
ପରଜା ସୁଖେ ମୋ ସୁଖ ସମ୍ମାନ ।

"ବିନା ପ୍ରଜାଶକ୍ତି ରାଜାର କି ଗତି
ରାଜା ପ୍ରଜା ନୁହେ ଶ୍ୟେନ କପୋତ,
ପ୍ରଜା-ଜଳ ବିନ୍ଦୁ ମିଳି ରାଜ୍ୟ-ସିନ୍ଧୁ
ରାଜା ସେ ସଲିଳେ କେବଳ ସ୍ରୋତ ।"

ସାନ୍ତାଳ ମୃଦଙ୍ଗ ସଙ୍ଗୀତ ଲହରୀ
ଖେଳ ଯାଇଥିବ ପ୍ରବାହେ ତବ,
ବନବାସୀ ପ୍ରିୟ ସ୍ୱଚ୍ଛ ମଧୁମୟ
ଅଘ୍ରାଣ କଲ୍ କି ପୁଷ୍ପ-ଆସବ ?

କହ ଗନ୍ଧବହ, ଅଛି କି ଉତ୍ସାହ
ଗିରି ବନବାସୀ ସକଳ ପ୍ରାଣେ,
ରୁକ୍ଷ ରମ୍ୟ ମୂର୍ତ୍ତି ଜନ୍ମଭୂ ପ୍ରକୃତି
ସ୍ୱାଧୀନତା ମନ୍ତ୍ର କହେ କି କାନେ ?

ଝରଣ ପାଦପ ସ୍ୱାଧୀନତା ବାସ
ଗିରିଶିଖେ କରିଥିବ ବିହାର,

ଲେଖିଲା କି କାହିଁ　　　ରଖିଛ ଲୁଚାଇ
ସ୍ୱାଧୀନତା ଶିଖା ଦଗ୍ଧ ଅଙ୍ଗାର ।

ଅଙ୍ଗାଶ ମୂଳକେ　　　ଚଳକେ ପଲକେ
ମେଳାଥିବ ତବ ତରଙ୍ଗମାଳା,
ସେ ତରଙ୍ଗେ ଦୋଳି　　　କୁସୁମ ଅଞ୍ଜଳି
ଢାଳୁଥିବ ସ୍ନେହେ କାନନବାଳା ।

ଭ୍ରମି ବହୁ ଦୂର　　　ବିଷମ ବନ୍ଧୁର
ଫୁଟି ପଡ଼ୁଥିବ ପଥ ଶରମେ,
ଦାବାନଳ ତାପ　　　ଅସହ୍ୟ ଅମାପ
ଭେଦୁଥିବ ଯେବେ ପୁଣି ମରମେ ।

ଆତୁର ଅଧୀରେ　　　ମହାନଦୀ ନୀରେ
ପଶିଥିବ ଯାଇଁ ସନ୍ତାପ ନାଶେ,
ଗିରି ନିତମ୍ବିନୀ　　　ତରଙ୍ଗ-ହାସିନୀ
ଅଙ୍ଗ ଫୁଲାଥିବ ନବ ଉଲ୍ଲାସେ ।

ଜରି ଗତ ବନ୍ଧ　　　ଉଚ ଶତଛନ୍ଦ
କାହିଁ କେତେ ଗଣ୍ଡେ ଗିରିସଙ୍କଟେ,
ପଶ୍ଚିମ ମୁଖରେ　　　ଯାଇ ଖଣ୍ଡଦ୍ୱାରେ
ମିଳିଥିବ 'ହୀରାଖଣ୍ଡ' ନିକଟେ ।

ମହାନଦୀ ବକ୍ଷେ　　　ଦ୍ୱୀପ ରମଣୀୟ
ସମ୍ବଲପୁରର ସୁଷମା ଖଣି,
ମଣ୍ଡିଥିଲା ଦିନେ　　　ହୀରକ ଯାହାର
ପୁରାତନ ରୋମରାଜ୍ୟ ବିପଣୀ ।

ସଙ୍ଗୀତ ସମ୍ପଦ ଏବେ ହ୍ରାସକୃତ
ଉପେକ୍ଷିତ ଧନସ୍ଥାନ ସମ୍ମାନ,
ଧୀବର-କୃପାଣ ଗଣଇ ଲହରୀ
ଗାଏ କେବେ ପଦେ ସ୍ୱସ୍ପୃତ ଗାନ ।

ଅଦ୍ଭୁତ ସଜଳ ଶ୍ୟାମ ଶୋଭାବନ
ପ୍ରକୃତି ସହଜ ଶୋଭା ପଟଳ,
ତେଣେ କି ମହାନଦୀ- ପୁଣ୍ୟ ତଟ-ବେଣୀ
ଥିବ କା ନିମିଷେ ତହିଁ ନିଶ୍ଚଳ ।

ଶୀତଳ ଶୀକର ଦେବ ହେ ସମୀର
କଲ କି ସମ୍ବଲପୁରେ ପ୍ରବେଶ ?
ଅବାଧ ବ୍ୟାକୁଳ ପୁରବାସୀ-କୁଳ
ହରିଥିବେ ତବ ପରଶେ କ୍ଲେଶ ।

ଅତି ପ୍ରିୟ ମୋର ସେ ସମ୍ବଲପୁର
ଅଛନ୍ତି ତ ତହିଁ ଭଲେ ସକଳ,
କଲ ଭାଷା ରକ୍ଷା ଧନ୍ୟ ସେ ଯେ କକ୍ଷା
ଗାଇବ ସେ ଚିର ଯଶ ଉତ୍କଳ ।

ଚମ୍ପକବରଣୀ ସ୍ମିତ ସୁହାସିନୀ
ଯହିଁ ଗୁଣବତୀ ପୁରଅଙ୍ଗନା,
ସ୍ୱଦେଶୀ ବସନେ ସ୍ୱଦେଶୀ ଭୂଷଣେ
ଦିଶେ ସଦା ତୋର ପ୍ରୀତି-ପ୍ରସନ୍ନା

ମହାନଦୀ ନୀର ଶୀତଳ ସମୀର
ସେବନ୍ତି ସ୍ୱଚ୍ଛନ୍ଦେ ତନୟେ ଯାର,

ଅଛି ମୋ ବିଶ୍ୱାସ          ହେବ ସେ ଅବର୍ଣ୍ଣ
ସ୍ୱାଧୀନତା ରଣେ ଦୃଢ଼ ପ୍ରାକାର ।

ସମ୍ବଲପୁରର          ଶୁଭ ସମାଚାର
ଶୁଣାଅ ସଦର୍ପେ ସମୀର ଥରେ,
ଉତ୍କଳ- ଜାହ୍ନବୀ          ଚିତ୍ରୁ ମହାନଦୀ
ପୁଣ୍ୟ ଅମ୍ବୁକଣା ଆଣ ମୋ ଦ୍ୱାରେ

ତାପିତ ମୋ ହୃଦ          ହେଉ ଶାନ୍ତ ମୁଦ
ଆତ୍ମୀୟ ସ୍ୱଜନ ବାରତା କହି,
ଚରଣରେ ବନ୍ଦ          ପୁଣ୍ୟ ଗନ୍ଧବହ
ତେଣୁ ପଥ ଚାହିଁଅଛି ମୁଁ ରହି ।

ମୋ ନେତ୍ର ଆଗରେ          ହରଷେ ବାହାରେ
ଦୋଳାଉଛି ତରୁ ଶାଖା ପଲ୍ଲବ,
କେଉଁ ଅପରାଧେ          ଦୋଷୀ ତବ ପାଦେ
ନ କର ମୋଠାରେ କରୁଣା ଲବ ।

ବନ୍ଦୀ ବୋଲି ମତେ          କିବା ଘୃଣା-ନେତ୍ରେ
ଦେଖି କି ହେ ତେଣୁ ପାଶେ ନ ଆସ,
ଭେଦଜ୍ଞାନ ସବ          ଲାଗେ ଅସମ୍ଭବ
ତୁମ୍ଭେ ଚରାଚର ବିଶ୍ୱ ନିଃଶ୍ୱାସ ।

ସମାଜ ନିଷ୍ଠୁର          କରେ ଯାଉ ଦୂର
ସେ ନୁହେ ପ୍ରକୃତ ପ୍ରେମୁ ବାହାର,
ଗଗନେ ପବନେ          ଚନ୍ଦ୍ରମା ତପନେ
ଜଳେ ଫଳେ ଫୁଲେ ତା ଅଧିକାର ।

ନରପତି ନର        କରେ ଅନ୍ତର
    ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ        ସୁଗନ୍ଧ ଶୀତଳ
    ପ୍ରବାହେ ପରଶ ମୋ ଦଗ୍‌ଧ ପ୍ରାଣ ।

କରୁଛି କୀର୍ତ୍ତନ        ସଦା ତବ ଗୁଣ
    ନିଖିଳ ଜଗତ ଜୀବ-ଜୀବନ,
ଅବହେଳେ ବେଳେ        ଏଥି କାରଣେ
    ଭୁଲିଁଯାଅ ମତେ ମୁକ୍ତପବନ ।

ଆସିଅଛ ଭ୍ରମି        କେତେ ପୁଣ୍ୟଧାମେ
    ଲଗାଇ ଦିଅ ମୋ ଶିରେ ପ୍ରସାଦ,
ସେ ପୁଣ୍ୟ ପରଶେ        ଘୁଞ୍ଚୁ ଅବସାଦ
    ଅପସରୁ ଦୂରୁଁ ମୋହ ପ୍ରମାଦ ।



# ବନ୍ଦୀର ସନ୍ଧ୍ୟା-ଭାବନା

ଗୋଧୂଳି ଗଗନେ ଏବେ
ଉଇଁ ପ୍ରାଚୀଦିଗ ଭାଲେ
ପ୍ରଦୋଷ ପ୍ରଥମ ତାରା
ଢାଳେ କ୍ଷୀଣ ଜ୍ୟୋତିଧାରା

ଅନାଏ ସେ ମିଟି ମିଟି
ଲାଗେ କାନ୍ଥ ଆର ପାଖେ
କେତେ ଦୂରୁଁ କାରାଦ୍ୱାରେ
ଲୁଚି ଯଥା ଉଙ୍କି ମାରେ ।

ତାରି ସଙ୍ଗେ ମନେ ମୋର
ଫେନିଳ ତରଙ୍ଗ କେତେ
ଫୁଟେ କେତେ ଦୃଶ୍ୟରାଶି
ମନାର୍ଣ୍ଣବେ ଉଠେ ଭାସି ।

ଏକ ପରେ ଆନ ଆସେ,
ଅବିରତ ପିଟେ ମଥା
ଲାଗିଛି ଅନନ୍ତ ଖେଳା
ସତେ ତାରକାତ ବେଳା

ଦୂମାଳ ବିତାନ ଦିଶେ
ଶ୍ୟାମଳ ପାଦପପନ୍ତି
ଚକ୍ରବାଳ ମୂଳଯାଏ
ଝରେ ଦୂରେ ଶୋଭପାଏ ।



ପଡ଼ଜରେ ମାଛ ସେନି
କୂଳେ ତା ପିଲାଏ ବସି
ନୋଳଆ ଲେଉଟି ଆସେ
ଗୀତ ଗା'ନ୍ତି ଅଟ୍ଟହାସେ ।

ପାଣିକି ଡଅଁନ୍ତି କେତେ
ଘାଗ୍ରେଟି ଆଣିବେ କୂଳେ
ଭାଙ୍ଗିବେ ଲହଡ଼ି ସାତ
ଧରି ଯେଝା ବାପ ହାତ

ଧାଡ଼ି ଧାଡ଼ି କେତେ ପକ୍ଷୀ        ସମୁଦ୍ର ଉପର ଦେଇ
ନିଜ ନିଜ ବସାମୁଖେ        ଯାଉଅଛନ୍ତି କଳରବେ ।

ଦଳ ଛାଡ଼ି ଏ ପକ୍ଷୀଟି        ଥିଲା ପଛ ପଥ ଭୁଲି
ବସା ଖୋଜି ଦୌଡ଼ି ବେଗେ        ଏକାକୀ ଯାଉଛି ଉଡ଼ି ।

ଦେଖ ପଛ ଏହା ବସା        କଲ୍ଲସ୍ତ ପାହାଡ଼ କୂଳେ
ଛଡ଼ାଇବ ଚର୍ଚ୍ଚ ଗତ        ସ୍ୱଚ୍ଛନ୍ଦେ ଶାବକ ଭୁଲେ ।

ଛାଡ଼ି ଗୁପ୍ତ ବୃନ୍ଦାବନ        ବକୁଳ ତମାଳ ଡାଳ
ଯିବଣି ଚଢ଼ଇ ପାଖ        ଉଡ଼ି ପକ୍ଷୀ ମାଳ ମାଳ

ଗୁପ୍ତ ବୃନ୍ଦାବନ କୁଞ୍ଜେ        ଥିବ ନାହିଁ କୋଳାହଳ
ସ୍ନିଗ୍ଧ ପବନରେ ଝଡ଼ି        ପଡ଼ୁଥିବ ଫୁଲଦଳ ।

କଲ୍ଲସ୍ତ ଶଙ୍ଖ ଶିଖର        ଦିଶେ ଦାବାନଳ ତେଜ
ଆଣଇ ସେ ମନେ ମୋର        ବରୁଣୀ ପାହାଡ଼ ଦେଜ ।

ବରୁଣୀ ଜଙ୍ଗଲେ ଏବେ        ଲାଗିବଣି ଦାବାନଳ
ଜଳୁଥିବ ଦାଉ ଦାଉ        ଶୁଷ୍କ ତରୁ ଶାଖାଦଳ ।

ଶୁଖିଲା ବାଉଁଶ ଗଣ୍ଠି        ଫୁଟୁଥିବ ଘନ ଘନ
ହେଙ୍ଗୁଳା ପବନ ବେଗେ        ବଢୁଥିବ ସନ ସନ ।

ସିନ୍ଦୂର ବରଣ ଶିଖା        ଉଚ୍ଚ ଜଳି ଲହ ଲହ
ପରୁଷ ପବନ ଘାତେ        ଉଠୁଥିବ ଶହ ଶହ ।

ଲକ୍ଷ ଲକ୍ଷ ଅଗ୍ନିକଣା        ନଭେ ଯାଉଥିବ ଉଡ଼ି
କେତେ ତରୁ ଶୁଷ୍କ ଶାଖା        ଜଳି ପଡ଼ୁଥିବ ଛିଡ଼ି ।

ନିଦାରୁଣ ଦାବାଲୋକେ        ଚୋପା ଦିଶୁଥିବ ବଣ
ଚକମକେ ଝଳୁଥିବ        ଦେବୀପାଦ ପ୍ରସ୍ରବଣ ।

ଶୁଣିଲି ପବନ ଶ୍ୱାସ      ଧାସେ ଜଳୁଥିବ ତଳେ
କାଠରେ ପଳାଇଥିବେ      ମୃନ୍ତ ଶଣା ଦଳେ ଦଳେ;

ଦମ୍ ମାରୁଥିବେ ଯାଇ      ଗିର ଚନ୍ଦୁ ଖଣ୍ଡ ଦୂରେ
ସମତଳ ଭୂମିପରେ      ନଷ୍ଟ ଖଣିଦଂସପୁରେ ।

ସୁରୁଣା ନଗର ଆଦା      ସ୍ୱାଧୀନତା ଶେଷବର୍ତ୍ତି
କଷ୍ଟ୍ରୁ ଉଜ୍ଜ୍ୱଳ ଯଷ୍ଟି      ଜଳୁଥିଲା କ୍ଷୀଣେ ଅଛି,

ଲିଭିଯାଉଛୁ ସେ ଦୀପ      ଅନ୍ଧାର କରଛୁ ଗ୍ରାସ
ଭିତାରେ ଉଠିଛୁ ଏବେ      କଣବୁଦା ଗଛ ଘାସ ।

ସେ ଅମା-ଅନ୍ଧାର କଥା      ଏ ଅନ୍ଧାର କାରାଗାରେ
କହିଁ। ଭାବେ ? ଉଡ଼ିବ ପ୍ରାଣ      ଦୁଃଖ ଶୋକ ଅକୂପାରେ ।

ଲିଭିଗଲେ ଏକାବେଳେ      ମହତ୍ତ୍ୱର କ୍ଷୀଣ ସ୍ପୃହା
ଦେଖି କଏ ସମ୍ଭାଳିବ      ଧରି ରକ୍ତ ମାଂସ କାୟା ?

ଜପ୍ତୀ ବାଳଗୁରୁ ଆତ୍ମା      ଚନ୍ଦାଇ ସୁଦୀର୍ଘ ଶ୍ୱାସ
ବୁଲୁଥିବ ଏବେ ଏକା      ପୁଷ୍କରିଣୀ ତଟପାଶ ।

ଝରଣା ବନ୍ଧ ସଙ୍ଗୀତ      ଗାଉଥିବ କ୍ଷୀଣ ନାଦେ
କି ଅବା ନିରେଖି ଶ୍ରଦ୍ଧେୟ      କସିଥିବ ଅବସାଦେ ।

ଗୁମ୍ଫଟିରେ କାଳ ଘଣ୍ଟା      ବାଜେ ଠଣ୍ ଠଣ୍ ଠଣ୍
ଯେ ଯାହା ପଞ୍ଜୁରେ ବନ୍ଦ      ଦେଉଣେ ସବେ ବନ୍ଦୀଗଣ ।

ସନ୍ତ ଖ୍ରୀଆଜନ୍ମ ସଂଖ୍ୟା      ଡାକେ ଜଣେ ଜଗୁଆଳି
ଲାଗିବ ଏ ରଣ୍ଡଯାକ      ସଂଖ୍ୟା ସଙ୍କୀର୍ତ୍ତନ ପାଳି ।

କାଳବଣି ମାଳାରେ      କେତେ ଘଣ୍ଟା ଭେଳ ଭୁର
ଏ ସନ୍ଧ୍ୟା ଆରତି ବେଳେ      ବେଢ଼ା ଉଠୁଥିବ ପୂରି ।

କେହି କରୁଥିବେ ଜପ — ଦେଉଥିବେ କେହି ସ୍ତୁତି
କାହିଁ ନାମ ସଙ୍କୀର୍ତ୍ତନ — ଲାଗିଥିବ ଦିବ୍ୟସ୍ଫୂର୍ତ୍ତି ।

ଉତ୍କଳର ପଲ୍ଲୀ ଗ୍ରାମେ — ଏବେ ଭାଗବତ ଘରେ
ଭାଗବତ ପଦ ଦୁଆ — ଉଠିବଣି ଉଚ୍ଚସ୍ୱରେ ।

ଏ ନିର୍ଜନ ସେଲେ ସନ୍ଧ୍ୟା — କରୁଛି ମୁଁ ସେ ଭାବନା
ଏକାନ୍ତେ ମୁହୂର୍ତ୍ତେ ବସି — କରେ ଦେହଲେ ଉପାସନା ।

ପୂର ରକ୍ତଚନ୍ଦ୍ର ପ୍ରଭୁ — ସଙ୍ଗ ଭକ୍ତେ ସର୍ବ ସ୍ଥାନେ
ଗାଇବ ପରାଣେ ଶାନ୍ତ — ତାଙ୍କ ପାଦପଦ୍ମ ଧ୍ୟାନେ ।

ଚଳାଇବ ହୃଦେ ଘଣ୍ଟା — ଅନ୍ତରେ ଦୀପ୍ତ ଜାଳ
ଆରତି ରଚିବ ଏଥି — ପଦେ ପ୍ରେମ ପୁଷ୍ପ ଢାଳ ।

ଜୀବନ ନୈବେଦ୍ୟ ଚରମେ — ସେହି ମୋର ଧ୍ରୁବତାରା
ତାଙ୍କ କନେ ତୀର୍ଥ ମୋର — ଅକ୍ଷମ ଦୁଃସହ କାରା ।

ସେ ସଖା ସୋଦର ସ୍ୱାମୀ — ଅନନ୍ତ ସଦା ମୋ ସାଥି
ତାଙ୍କରି ଆଶ୍ରୟେ ଏବେ — ପୁହାଇବ ଆଜରାତି

# କାରାଗାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ *

ତରୁଣ ବୟସେ ଯେବେ ବସି ତବ ପାଖେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର,
ସେ ଦିନୁ ଏ ଯାଏ ସବୁ ମୂର୍ତ୍ତି ମନେ ଆସେ
ଶୁଣି ଆଜ ତବ ମୃତ୍ୟୁ ଶୋକ-ସମାଚାର । ୧ ।

ଭାଗ୍ୟ ନୋହିଲା ବାଞ୍ଛି ତବ ରୁଚି ଅନୁକୂଳ
ଜାଣେ ମୁଁ କାହିଁକି କାଳ ଚିର ଦାହାନଳେ
ଜୀବନର କର୍ମ-କ୍ଷେତ୍ର ସତତ ବ୍ୟାକୁଳ,
ପାଇ ନାହିଁ ସୁଖଶାନ୍ତି କ୍ଷଣେ ପରିବାରେ । ୨ ।

ଦେଖିଛି ଅନ୍ତରେ ତବ ଥିଲା ଅଗ୍ନି କଣା
ଜଳନ୍ତା ଲାଗିଥିଲେ ଯଥାକାଳେ ବାୟୁ,
କୁହୁଳି କୁହୁଳି ତାହା ଲଭିଲା ଅଜଣା
ନିଃଶାସ ଉଷ୍ଣଶ୍ୱାସେ ତରଳିଲା ଆୟୁ । ୩ ।

କେତେ ନାହିଁ ଜଗାଇ ସ୍ନେହ ଆଦର ବିଶ୍ୱାସ
ପୋଷିଥିଲ ନିଜର ଅନ୍ତରେ ମୋ ପ୍ରତି,

---

* ଗୋପବନ୍ଧୁଙ୍କ ଶିକ୍ଷାଗୁରୁ ପୁରୀବାସୀ ସ୍ୱର୍ଗୀୟ ଦିବ୍ୟସିଂହ ମିଶ୍ରଙ୍କ ପରଲୋକ ସମ୍ବାଦରେ ଲିଖିତ । ଦିବ୍ୟସିଂହ ମିଶ୍ର ବି. ଏ. ପାଶ କରି ପୁରୀ ଜିଲ୍ଲାସ୍କୁଲ ସହକାରୀ ଶିକ୍ଷକ ଥିଲେ । ସେତେବେଳେ ଏ ସ୍କୁଲରେ ବି. ଏ. ପାଶ କରିଥିବା ଓଡ଼ିଆ ଶିକ୍ଷକ ଏକମାତ୍ର ସେହି ଥିଲେ ।

## କାରାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ

ଅନ୍ତିମ ମୃତ୍ୟୁରେ ମୋର ଦୂର କାରାବାସ
ତୁମର ମରମେ ବ୍ୟଥା ପାଇଥିବ ଅତି । ୪ ।

ଦେଲା ମୋର କାରାଦଣ୍ଡ ଯେବେ ପଡ଼େ ମନେ
ଛୁଟି ହୋଇଥିଲ ଆସି ଦରବାର ଦ୍ୱାରେ,
ଛଳଛଳ କରି ସ୍ନେହ ଲୋତକ ନୟନେ
ରୁଦ୍ଧକଣ୍ଠେ ଆଶିଷିଲ ମୋର ନମସ୍କାରେ । ୫ ।

ଫେରି ଏଥୁଁ କହିଥାନ୍ତି ପୁଣି ନମସ୍କାର
କହିଥାନ୍ତି ଫେଡ଼ି ମୋର କାରା ଅନୁଭବ,
କ୍ରୂର କାଳ ଲଗାଇଲା ଛେଦ ମୋର ଆଶ
ଘଟାଇଲା ଏ ଦାରୁଣ ଶୋକ ଅଘଟନ । ୬ ।

ଆସୁ ଆସୁ ଆସିବ ଦିନ ଯେବେ ଯେତେ ଦୁଃଖ
କରିଛି ଏ ଚିତ୍ତକୁ ମୁଁ ପାଷାଣୁଁ କଠିନ,
ଆତ୍ମୀୟସ୍ୱଜନ ଆଉ ଫେରାଇଣ ମୁଖ
ଅନ୍ଧକାର କାରାକକ୍ଷେ ପଶିଲ ଯେ ଦିନ । ୭ ।

ମୋ କାର୍ଯ୍ୟେ ମମତା ସଦା ଥିଲା ତବ ପ୍ରାଣେ
ମୋ ବିପଦେ ଭୋଗୁଥିଲ ସ୍ୱଜନ ବେଦନା
ନ ଗଲି ଶ୍ମଶାନ ଯାଏ ଅନ୍ତିମ ପ୍ରୟାଣେ
ଚିରଦିନ ରହିଲା ଏ ଗଭୀର ଶୋଚନା । ୮ ।

ରହିଛି ଏପରି କେତେ ଶୋଚନା ସଞ୍ଚିତ
ଶୈଶବୁଁ ବିୟୋଗ ଦୁଃଖ ଗଢ଼ା ଏ ଜୀବନ,
ଜାଗିଲେ ସେ ସ୍ମୃତି ଚିତ୍ତ ହୁଏ ବିଚଳିତ
ଝରେ ଆଖି ଅଶ୍ରୁ ମାରେ ଅଙ୍ଗ ଅବସନ୍ନ । ୯ ।

ଦେଖି ନାହିଁ ମାତୃମୁଖ ଅଜ୍ଞାନ ଶୈଶବେ
ପିତା ପୁତ୍ର ପତ୍ନୀ ବନ୍ଧୁ ବିୟୋଗ ବିଘାତ;
ବାର ବାର ଡଡେଲ ଶୋକ-ମହାର୍ଣ୍ଣବେ
ବୁଡ଼ାଇ ଦେଇଛି ବୁକେ ଖାଲୁ କଷାଘାତ । ୧୦ ।

ବିରହ ବିଷାଦ ବକ୍ଷେ ରସାଣିତ ଧାର
ଝୁରି ଭାଳ ବାର ବାର ଖଣ୍ଡନ କରିବାକେ,
କରିଛି ଏ ବକ୍ଷେ ଅପାର ଦାରୁଣ ପ୍ରହାର
କୃଷ୍ଣ ଚିଶଳ ଗୁପ୍ତ ମାରେଛି ମୋ ଭାଲେ । ୧୧ ।

ଅଜତ ବୟସେ ମୋର ବହୁ ଅନୁଭବ
ହୃଦ ନକ୍ଷେତ୍ରିତ ମୋର ବିରହ କଷଣେ,
ଛୁଟିଛି ମୋ କଳ୍ପନାର ବିଳାସ ବୈଭବ
ଦେଖେ ମୁଁ ଜୀବନରଣ୍ଡି ବାସ୍ତବ-ନୟନେ । ୧୨ ।

ତୃଣ ଫେନ ଯଥା ମହାସାଗର ତରଙ୍ଗେ
ଭସିଆସି କ୍ଷଣେ ମିଳି ହୁଏ ଅନ୍ତରେ
ପିତା ପୁତ୍ର ପତି ପତ୍ନୀ ମିଳି ଏକ ସଙ୍ଗେ
କାଳ-ସ୍ରୋତେ କାହିଁ ପୁଣି ଚଳନ୍ତି ଭ୍ରମିତ । ୧୩ ।

ଏହି କି ପ୍ରଣୟ ଗତି, ଏହି ପରିଣାମ ?
ଅପାର ଜୀବନ ସ୍ରୋତେ ମୁହୂର୍ତ୍ତେ ମିଳନ ?
ଭେଟ ସ୍ଥାନ ଏକମାତ୍ର କ୍ଷୁଦ୍ର ଧରାଧାମ ?
ତେବେ କାହିଁ ଏ ମମତା, ଏତେ ଆୟୋଜନ ?

ଫେନ ତୃଣ ବାରେ ଯେବେ ଭେଟି ପରସ୍ପରେ
ଅନନ୍ତ ଭ୍ରମଣ ପଥେ କରନ୍ତି ଗମନ,

## କଟକରେ ଜଣେ ବନ୍ଧୁଙ୍କ ଦୁର୍ଯୋଗବାର୍ତ୍ତା ଶୁଣିବା ପରେ

କେ ଜାଣେ ନ ଦେବ ବୋଲି ଭେଟ ଆଉ ଥରେ
ତୁଟେ ନାହିଁ କାହିଁ ସ୍ମୃତି ମମତା ବନ୍ଧନ । ୧୫ ।

ଚିତାନଳେ ଭସ୍ମ ନୁହେ ସେନେହ ବନ୍ଧନ
ଶ୍ମଶାନ ନୁହେ ଏ ଜୀବ ଶେଷ ପରିସୀମା,
କେବେ କାହିଁ ହେବ ନଷ୍ଟେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା । ୧୬ ।

ସୁଖ ଦୁଃଖେ ତେଣୁ ମୋର ସମ ସହଚର
ଜନମେ ମରଣେ ନାହିଁ ହରଷ ବିଷାଦ,
ଆହ୍ଲାଦେ ଆପଦେ ମୋର ସମାନ ଆଦର
ସବୁ ଶୁଭ ବିଧାତାଙ୍କ ଶୁଭ ଆଶୀର୍ବାଦ । ୧୭ ।

ଏ ବିଶ୍ୱାସେ ଜାଗେ ମୋର ପୁଣ୍ୟ ତପୋବନ
ଆତ୍ମୀୟ ବିୟୋଗ ପ୍ରାଣେ ଅପୂର୍ବ ଉନ୍ମେଷ
ଯେବେ ଯେ ନିକଟେ ମୋର ଆସିଛି ମରଣ
ରହିଅଛି ବହୁ କାର୍ଯ୍ୟ ଏବେ ଅବଶେଷ । ୧୮ ।



# ଦେଖାଦିଅ ବାରେ

ଚଉଦିଗ ମୋତେ ଘେରେ ଅନ୍ଧକାର
ଲାଗେ ଏ ଜୀବନ ଅତି ଗୁରୁଭାର
ନୟଣା ବିଶ୍ୱାସ କହେ ଅନ୍ତରେ
କରିବ କି ପ୍ରତିକାର ? । ୧ ।

କାହିଁ ମୋର ସେହି ପ୍ରାଣ ପ୍ରେମଧାର
କାହିଁ ମୋର ସୁଧାମୟ ହୃଦହାର
ଦିଅ ଦେଖା ବାରେ ଏ ଘୋର ଅନ୍ଧାରେ
ଦେଖି ମୁଁ କି ନାରଖାର ! । ୨ ।

ଚଳାଅ ମୋ ଅଙ୍ଗେ ଅମିୟ ଅଞ୍ଜଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି
ବଜାଅ ସେ ବୀଣା ମୃତ୍ୟୁ ଉପୁଜଣା
ଉଠୁ ପ୍ରାଣ ମୋ ଉଛୁଳି । ୩ ।

ଲୁଡ଼ ନାହିଁ ପୁଣ ଏବେ ମୋ ଚେତନା
ଲୋଡ଼େ ଏ ପରାଣ ସେନେହ ସାନ୍ତ୍ୱନା
ଅକଳ ଅପାଙ୍ଗେ ଅନାଅ ଏ ଅଙ୍ଗେ
ଆସୁ ଆଶା ଆଶ୍ୱାସନା । ୪ ।

ମଧୁର ମୁରଲୀ ବିମୋହନ ତାନ
ଶୁଣାଅ, ପୁଲକ ଉଠିବ ପରାଣ
ଅଶ୍ରୁ ଉପସ୍ବର                    କରନ୍ତେ ବିସ୍ବର
ଥାଉଁ ଥାଉଁ ମୋର ଜ୍ଞାନ ।୫।

ଉଠୁପଛେ ତାନେ ଦୁଃଖମୟ ଗୀତ
ଦୁଃଖଗଢ଼ା ପ୍ରାଣ ପାଉ ଦୁଃଖେ ପ୍ରୀତ
ଦୁଃଖେ ସୁଖେ ମୋର                    ସମାନ ଆଦର
ବାଅ, ବେଳ ଯାଏ ବିତ ।୬।



# ପ୍ରେମର କି ଏହି ପରିଣାମ ?

ତରଳ କରୁଣେ ବେନି ହୃଦ ଢଳଢଳ
ମିଶିଲ ସହଜେ ଯଥା ଜଳ ସଙ୍ଗେ ଜଳ ।

କୋମଳ କୈଶୋରେ ପ୍ରୀତି ହେଲ ଗାଢ଼ତର
ସହେ ନାହିଁ ପ୍ରାଣ, ହେଲେ ମୁହୂର୍ତ୍ତେ ଅନ୍ତର

ଆହାର ଭୋଜନ ନିଦ୍ରା ସ୍ନାହାନ ଆଳାପ
ଗାନ ଧ୍ୟାନ ଅଧ୍ୟୟନ ସୁହାସ ବିଳାପ ।

ଜୀବନର ବୃତ୍ତି କାର୍ଯ୍ୟ ଯଥା ଏକ କଳେ
ଅନୁକ୍ଷଣେ ଏକ ଭାବେ ବେନି ତନୁ ଚଳେ ।

ଏକ ହୃଦେ ଲାଗେ ଯେବେ ଦୁଃଖ ତାଜ ଘାତ
ସଙ୍ଗେ ସଙ୍ଗେ ଆନ ନେତ୍ରୁ ହୁଏ ଅଶ୍ରୁପାତ ।

ବେନି ପିଣ୍ଡେ ଏକ ଆତ୍ମା ଏକ ମନ ପ୍ରାଣ
ବେନି ହୃଦେ ଏକ ତନ୍ତ୍ରେ ବାଜେ ସମତାନ ।

ସେ ମୋହନ ତନ୍ତ୍ରେ ସୂକ୍ଷ୍ମ ଛିଦ୍ର ଥିଲ କାହିଁ
ସ୍ୱପ୍ନେ ହେଲେ କେହି କେବେ ମନେ ଭାବ ନାହିଁ ।

ରହୁଁ ରହୁଁ ହେରୁ ବାଣ୍ଟା ହେଲ ବେନି ଭାଗ
ନାହିଁ ଆଉ ତାନ ଲୟ ନାହିଁ ଗୀତ ରାଗ ।

ଉପୁଜିଲ ଅଲକ୍ଷିତେ କାହୁଁ ଅନ୍ତବନ୍ଧୁ
ସ୍ୱାର୍ଥ ଚାପେ ଛିଣ୍ଡାଇଲ ପ୍ରୀତି-ପଦ୍ମ-ସିନ୍ଧୁ ।

ସଂହତ ଶ୍ୟାମଳ ସ୍ନିଗ୍ଧ ଶୈଳଗର୍ଭେ ଲୁଚ,
ଥିଲ ଶିଳା ଭେଦକ୍ଷମ ସୂକ୍ଷ୍ମ ବଜ୍ର ସୂଚ ।

## ପ୍ରେମର କି ଏହି ପରିଣାମ ?

ଅକସ୍ମାତେ ବିଦାରିଲା ଶଇଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର

ମଧ୍ୟ ବହେ ଭୀମବେଗେ ଝଣାକ ପ୍ରପାତ
ଘଟିବ କି ଆଉ ସେଥି ଦେହଙ୍କ ସାକ୍ଷାତ ?

ନଶ୍ୱର ହେବେ କି ଏହି ଜୀବନର ଗତି,
କ୍ଷଣଭଙ୍ଗୁର କି ନର ପ୍ରଣୟ ପୀରତି ?

କଣ୍ଟକସଙ୍କୁଳ ପଥେ କୁସୁମ ବିତାନ
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଳ ସମାନ ।

ନରପିଣ୍ଡେ ପ୍ରେମ ଏକ ଅମର ସଞ୍ଚାର,
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାକର ।

ପ୍ରେମର ଏ ପ୍ରଶସ୍ତି କି କବି କଳପନା,
ପ୍ରେମ କି କେବଳ ମାତ୍ର ସ୍ୱାର୍ଥର ଛଳନା ?

କିଶୋରେ ଉପୁଜେ ପ୍ରେମ ମିଳି ପ୍ରାଣେ ପ୍ରାଣ
ଉତ୍ତର ବୟସେ ତାର ଏହି ପରିଣାମ ?

ଯୌବନ ସରସ ଭାବ ହୃଦୟ ପ୍ରସାର
ପ୍ରବୀଣ ଦୃଷ୍ଟିରେ ଘୋର ମସ୍ତିଷ୍କ ବିକାର ?

ଜୀବନର ପଦେ ପଦେ କାନ୍ଦି ହସିବେ ମେଳ
ଲୁହେ ପରା ଏ ଜୀବନ ବୃଥା ଶିଶୁ ଖେଳ ?

ଧିକ ଧିକ୍ ଶତ ଧିକ୍ ପ୍ରୌଢ ପ୍ରବୀଣତା,
ନାଶେ ଯେ ମାନବ ହୃଦ ସ୍ନେହ ସରଳତା ।

ଗର୍ବ ଅହଙ୍କାରେ ଯାର ପୀରତି ପିଷ୍ଟିତ
ଆକୁଳ ପ୍ରାଣେ ଯେ ଗାଏ ପୁଣ୍ୟ ପ୍ରେମ-ଗୀତ,

ବଞ୍ଚିଯାଏ ଦୂରେ ଯାଇ ବିଶ୍ୱ ପ୍ରେମିକତା
ଈର୍ଷାନଳେ ଜଳେ ଆଉ ନିକଟ ମମତା,

ଶୈଶବ ଉଦ୍ଦେଶ୍ୟହୀନ ସ୍ୱଚ୍ଛନ୍ଦ ସରଳ
ତରୁଣ ଉନ୍ମୁକ୍ତ ରମ୍ୟ କୋମଳ ତରଳ ।

ପ୍ରେମ-ପୁଲକିତ ନବ ମଧୁର ଯୌବନ,
ସରିଥାନ୍ତା ଏଥି ହେଲେ ମାନବ ଜୀବନ ।

ଉଡ଼ିବ କି ତରଦନ ଯୋଜନ ଅନ୍ତର ?
ବଞ୍ଚିବ କି ତରଦନ ଅତଳ ସାଗର ?

ଶୁଖିବ ନାହିଁ କି ସିନ୍ଧୁ ନିଦାଘ କିରଣେ ?
ଘନିବ ନାହିଁ କି ଶୀତ ହିମ ଆବରଣେ ?

ନିର୍ମଳ ଶରଦ ଶଶୀ ଶୀତଳ କିରଣ
ମଧୁର ବସନ୍ତ ମୃଦୁମନ୍ଦ ସମୀରଣ,

ହରିବ ନାହିଁ କି କେବେ ଦଗ୍ଧ ବେଦନା ?
ଘଟିବ ନାହିଁ କି ଆଉ ଯୁଗଳ ଯୋଜନା

ଛୁଟିବ ନାହିଁ କି କେବେ ହୃଦୟରୁ ଦାଗ,
ଫୁଟିବ ନାହିଁ କି ପୁଣି ପୂର୍ବ ଅନୁରାଗ ?

ଲଚ୍ଛି ଯେ ବୁକୁରେ ଶିର ଗୁହିଁ ଆନ ମୁଖେ
ଶୋଇଥିଲ କୁତୂହଳେ ଏକ ମନ ସୁଖେ ।

ଯେତେଯେତେ କଥା ଅଛି ସେ ବୁକୁ ଭିତରେ
ଫିଟିବ ନାହିଁ କି ତାହା କେବେ ଏକାନ୍ତରେ ?

ଏକକୁ ଅନାଇ ଆନ ନେତ୍ର ଅଶ୍ରୁ ଧାର
ବଞ୍ଚିବ ନାହିଁ କି ଭେଦ ହୃଦୟ-ଦୁଆର ?

"ତୁ ଛାଡ଼ିଲେ ମୁଁ ତ ରହେ ନ ଛାଡ଼ିବ କ୍ଷଣେ"
କହିବ କି ଏକ ଆନେ ଇଙ୍ଗିତ ଈକ୍ଷଣେ ?

ନୀରବ ଆଳାପେ କହି ମରମ ଭାଷଣ
କରିବ ନାହିଁ କି ଏକ ଆନେ ଆଲିଙ୍ଗନ ?

ବିକଶିବ ପ୍ରେମ ତେବେ ଅଭିନବ ରାଗେ
ଯୁଗଳ କମଳ କଳି ଫୁଟିବ ସରାଗେ ।

ବିଚ୍ଛେଦେ ବିନାଶ ପ୍ରେମ ଅନ୍ତ ମଧୁମୟ
ଶୀତ ଅନ୍ତେ ଶୋଭେ ଯିନା ନବ କିଶଳୟ ।



# ବିଶ୍ୱର ମିଳନ ଚିତ୍ର

କାହିଁ ତପନ କେତେ ଦୂର ଅମ୍ବରେ
କାହିଁ ନଳିନୀ ଜଳେ ଫୁଟଇ ସରେ,
ଉଇଁବା ମାତ୍ରେ ରବି କର ବଢ଼ାଇ
ନଳିନୀ ଅଙ୍ଗେ ଦିଏ ଅଙ୍ଗ ଲଗାଇ ।୧।

କାହିଁ ସୁନୀଳ ନଭେ ହସନ୍ତେ ଇନ୍ଦୁ
କାହିଁ ଧରଣୀ ତଳେ ସୁନ୍ଦର ସିନ୍ଧୁ,
ପ୍ରେମେ ଲହରୀ ବାଳା ଖେଳେ ଉଲ୍ଲାସେ
ସୁଧାଂଶୁ ସୁଧାମୟ କର ପରଶେ ।୨।

ସଞ୍ଚରେ ବାୟୁ କାହିଁ ଅନନ୍ତ ପଥେ
ନ ଭୁଲେ ପ୍ରୀତି ଗିରିଗୁହା ସଙ୍ଗତେ,
ନ କରି ଦିନ ବାର ଋତୁ ବାରଣ
ଦରୀ ସୁନ୍ଦରୀ ମୁଖ ଚୁମ୍ବେ ପବନ ।୩।

ନୀରଦ ଆଲିଙ୍ଗନେ ସଦା ସ୍ନେହରେ
ରଖଇ ଚପଳାକୁ ନିଜ ଦେହରେ,
କଳା ହେଲେହେଁ ମେଘ ପ୍ରେମ ପୁଲକେ
ରହୁ ଚପଳା ଚୁମ୍ବେ ପଲ ପଲକେ ।୪।

ବନ୍ଧୁର ଶାଖା ଭୁଜ ତରୁ ସୁବେଶେ
କଳିତ ଲତା ତନୁ ପ୍ରେମେ ଆଶ୍ଳେଷେ,
ନ ଛାଡ଼େ ତରୁ ସଙ୍ଗ କେବେ ବ୍ରତତୀ
ସର୍ବାଙ୍ଗ ସମ୍ମୁଖେ ଚୁମ୍ବଇ ଦଣ୍ଡି ।୫।

କଠିନ ଗିରିବକ୍ଷେ ଚୁମ୍ବେ ଝରଣା
ଅଙ୍ଗରେ ଅଙ୍ଗ ନଦ ଶୁଭ୍ରବରଣା,
ସହେ ଶଇଳ ତାର ପ୍ରପାତ ଭାର
ସାଦରେ ଧରା ଯେହ୍ନେ ଗଳାର ହାର । ୬ ।

ଲଙ୍ଘି ସହେ କେତେ ପଥ ଦୁର୍ଗମ
ପ୍ରେମେ ଉତ୍ସୁକେ ଲଭେ ସିନ୍ଧୁ ସଙ୍ଗମ,
ଚୁମ୍ବିଲେ ସିନ୍ଧୁ ନୀର ବେଳାକ ଚାରୁ
ଗାଢ଼ ଆଶ୍ଳେଷ ଦୃଶ୍ୟ ନ ହୁଏ ଆଜୁ । ୭ ।

ଭୂଲି ସାଗର ନିଜ ମହତପଣ,
ପ୍ରେମ ଉନ୍ମାଦେ ଚୁମ୍ବେ ବେଳା ଚରଣ,
ମର୍ଯ୍ୟଦା ଜଗି ମନା କରଇ ବେଳା
ଲାଗିଛି ଅନୁକ୍ଷଣ ଏ ପ୍ରୀତିଖେଳା । ୮ ।

ଚୁମ୍ବେ କଠିନ ଲୌହ କଠିନ ଶିଳା
ଜଗତେ କି ଅଦ୍ଭୁତ ଏ ପ୍ରେମ ଲୀଳା
ଚୁମ୍ବନ ଆଲିଙ୍ଗନ ପୀରତି କ୍ରିୟା
କ୍ଷଣକେ ତରଳାଏ ପାଷାଣ ହିଆ । ୯ ।

ଶୂନ୍ୟ ସଂସାର ମୋର ଶଯ୍ୟା ସଦନ
ଚୁମ୍ବନ ଆଲିଙ୍ଗନ ମନେ ସ୍ୱପନ,
କିଏ ବା ଦେବ ନେବ ପ୍ରେମ-ପୀୟୂଷ
ନୀରବ ହାହାକାର ପିବ ଅପୂଷ ? । ୧୦ ।

ମିଳିବ ନାହିଁ କି ସେ ପୀରତି ସୁଧା
ମୋ ଲାଗି ଶୁଷ୍କ କିଏ ବିଶ୍ୱ-ବସୁଧା ?
ଆଦର ଆଲିଙ୍ଗନ ଗୁରୁ ଚୁମ୍ବନ
ଦେବ ନାହିଁ କି ପ୍ରାଣେ ପୂର୍ଣ୍ଣ ପ୍ରେରଣ ?

ଜାଣେ ଅଛନ୍ତି ମୋର ପରାଣ ପତି
ସୁନ୍ଦର ସତ୍ୟ ଶିବ ଜଗତପତି,
ରହିଛି ନିତି ତାଙ୍କ ବାଟ ଅନାଇ
ହୃଦ-ପଲଙ୍କେ ଫୁଲଶେଯ ସଜାଇ । ୧୨ ।

ଦେଖିବି ଥରେ ଯେବେ ପରାଣନାହା
ଛାଡ଼ିବି ନାହିଁ ଭିଡ଼ି ଧରିବି ବାହା,
ଛନ୍ଦିବି ମନ ଭରି ଚୁମ୍ବି ଆଶ୍ଳେଷ
ପୂରିବ ପ୍ରାଣ ପ୍ରାସ ହରିବ କ୍ଳେଶ । ୧୩ ।

ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ମାଳ ମାରଦେ ଯଥା ଖେଳେ ଚପଳା
ନିର୍ଝର ଧାରା ଯଥା ଗିରି ମେଖଳା । ୧୪ ।

ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ,
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମେ ପରମାନନ୍ଦେ । ୧୫ ।

ଗିରି ସାଗର ନଦୀ ତପନ ଶଶୀ
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି,
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା । ୧୬ ।



# ବନ୍ଦୀର ଆତ୍ମକଥା

( ୧ )

"ଦେଶବାସୀ ବନ୍ଧୁ, ଅନ୍ତ୍ରପ୍ରିୟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
ଥିଲ ଏହା ଆଗୁ ଜଣାଶୁଣା କଥା,
ସେଥିପାଇଁ ତେବେ କପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେବେଁ ପରାଣ ଆତଙ୍କେ ।
ଜାଣିଛ ଲଗିଛି ଏ ଶାନ୍ତ-ସମର,
ନାହିଁ ଏଥି ତୋପ ହାତହତିଆର ।
ବଳ ବା ବଇବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲଗିଛି ଲଢ଼ାଇ,
ଭାଙ୍ଗିବାକୁ ପଶୁବଳର ବଡ଼ାଇ ।
ଛାଡ଼ି ଧନ-ଆଶା ଘରଦ୍ୱାର-ମାୟା
ଅସଙ୍ଗଶସ୍ତ୍ରେ ଯେ ସାଜଅଛି କାୟା,
ଅହିଂସା-ବଳରେ ଯେହୁ ବଳୀୟାନ,
ଏ ରଣପ୍ରାଙ୍ଗଣେ ତା'ର ଏକା ସ୍ଥାନ ।

ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ;

ବୁଝି ଏହା ମୁହିଁ ପଶିଛୁ ସଂଗ୍ରାମେ,
ନାହିଁ ମୋ ଭ୍ରୂକ୍ଷେପ ମାନ ଅପମାନେ।

ମିଶୁ ମୋର ଦେହ ଏ ଦେଶମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ।

ଦେଶର ସ୍ୱରାଜ୍ୟ-ପନ୍ଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼।

ସ୍ୱାଧୀନତା-ପଥେ ଭଲେ ହେଲେ ନଇ
ମୋ ଜୀବନ ଦାନେ ହେଉ ଅଗ୍ରସର।

ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା।" ।୧୫

( ୨ )

"ହେ ଉତ୍କଳବାସୀ ମୋ ଭାଇ ଭଉଣୀ,
ମୋ ଦଣ୍ଡ-ବାରତା ସଭେ ଥିବ ଶୁଣି।

ଶୁଣି କି ହେ ମନେ କରୁଛ ଶୋଚନା ?
ଶୋଚନା କପାଁ ? ଏ ମୋ କର୍ମ ରଚନା

କହୁଥିଲି ସଭ ବୁଲି ଗ୍ରାମ ଗ୍ରାମ,
'ଦେଶ ପାଇଁ ଦଶ ପାଇଁ କର କାମ,

ମିଳେ ଯଦି କାହା ଭାଗ୍ୟେ କାରାବାସ,
କାରା ନୁହଇ ସେ ପରମ ପ୍ରବାସ ।'

ଆସି ଏଥି ସୁଦ୍ଧା ଏବେ ମୋ ବସ୍ଥର
ଏ କାଷ୍ଟସ୍ଥ-ମୁକ୍ତ ସ୍ୱରଗ ଦୁଆର ।

ଘରବେ ଭୋଗୁଛି ବସି କାରାବାସ
ବ୍ରହ୍ମଁ ଗ୍ରହ୍ମଁ ଏବେ ଗଲା ବୃହମାସ ।

ଏହିପରି ଗଲେ ଚଉବିଂଶ ମାସ
ଫିଟିବ ମୋହର ବନ୍ଧ ନାଗପାଶ ।

ବରଷାରେ ମହାନଦୀ-ସୋତ ପ୍ରାୟେ
ଦିନ ପରେ ଦିନ କେଡ଼େ ବେଗେ ଯାଏ ।

କାଲି ପରି ମୋର ପୂରବ ସିଆଦ,
ଦିଅ ଭାଇ ମୋତେ ଏହି ଆଶୀର୍ବାଦ—

ମୁକ୍ତିକ ଦିଗଣ ତେଜେ ନବ ବଳେ
ଖଟେ ଯାଇ ପୁଣି ଭୂମି ପାଦତଳେ ।

ପୂର୍ବ ପୁରୁଷର ପରମ ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।

ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ,

ମାନବ ଜନମ ହୁଅଇ ସଫଳ
ଏ ମହାବାଞ୍ଛା କବୁ ହେବ ଉଜ୍ଜଳ ?

ଜାଣସ୍ତୁ ମମତା ବିଶ୍ୱଜନ-ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି,
ନୀରବ ନିଶ୍ଚଳେ ବସି ବନ୍ଦୀଘରେ,
ମାଗେ ଏହି ଭିକ୍ଷା ପ୍ରଭୁ ଶ୍ରୀ ପଦ୍ମରେ ।" । ୧୫ ।

( ୩ )

"ମୋ ଭାଇ ଭଉଣୀ ହେ ଉତ୍କଳବାସି,
ସ୍ୱରାଜ୍ୟ-ସାଧନେ ନ ହୁଅ ଉଦାସୀ ।
ସେ ଆଶାରେ ଥରେ କରିଛ ବିଶ୍ୱାସ,
ନ ଛାଡ ତା ଥିବା ଯାଏଁ ନିଃଶ୍ୱାସ ।
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର,
ଏହା ବିନେ ଦେଶ ହୁଏ ଛାରଖାର ।
ଅଙ୍ଗେ ନିଭାଉଛ କେତେ କି ଅବସ୍ଥା,
ଅନ୍ନ ବସ୍ତ୍ର ଆଉ ହେବ କି ହେ ଶସ୍ତା ?
ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ,
ପ୍ରଜାକୁଳ କ୍ରମେ ହେଲେଣି ଅସ୍ତ ।
କେତେ ମାସେ କେତେ ପ୍ରକାରରେ କର,
ଦେଇ ପ୍ରଜାଙ୍କର ଭାଙ୍ଗିଲଣି ଘର ।
ଟାଇବା ବାସନ ହେଉଛି ନିଲାମ,
ତେବେ ହେଲେ ନାହିଁ କରମ ବିରାମ ।

ସହି ନାନା ଦୁଃଖ ଯାତନା ସନ୍ତତ,
ନାହିଁ ଆଉ ତୁମ୍ଭ ଶରୀରେ ରକତ ।

ଜାଣେ ମୁଁ କରୁଛ ନାନା ଅଜ୍ଞ ଯୁକ୍ତି,
ଉଚିତ ଶାସିବା ହୀନ ରାଜନୀତି ।"

"ରହିବ ନାହିଁ ଏ ନୀତି କାଳେ କାଳେ,
ନାଶଯିବ ସତ୍ୟ-ନ୍ୟାୟ କରବାଳେ ।

ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲାଗି ଇନ୍ଦ୍ର କରେ ଜଳ ବୃଷ୍ଟି ।

ପ୍ରଜା ଲାଗି ଉଦେ ରବି ଶଶୀ ତାରା,
ପ୍ରଜା ଲାଗି ବହେ ଶତ ନଦୀଧାରା

ପ୍ରଜା ଲାଗି ରାଜ୍ୟ, ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।

ଭାରତର ରାଜଧର୍ମ ସନାତନ—
ପରଜା ରକ୍ଷଣ ପାଳନ ରଞ୍ଜନ ।

ସ୍ୱରାଜ୍ୟ ଏ ନୀତି ହୋଇବ ପ୍ରଖର,
ନ ରହିବ ଆଉ ଦୁଃଖ ଦୁର୍ବାର ।

ନ ସହିବ କଷ୍ଟ କେହି ଅନାହାରେ,
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।

ଦବାଇ ଶାସିବା ମନ୍ତ୍ର ଭାଙ୍ଗିଯିବ,
ପ୍ରଜାଙ୍କ ମତରେ ଶାସନ ଚାଲିବ ।

ଏହି ନବ ଯୁଗ ଆଣିବା ସକାଶେ,
ଗାନ୍ଧି ରହିଛନ୍ତି ସିନା କାରାବାସେ ।

ଭାରତର କେତେ କେତେ ମହାଜନ
ବନ୍ଦୀଶାଳେ ଏବେ କଟାନ୍ତି ଜୀବନ ।

ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।

ଉତ୍କଳମାତାର ଆଜ୍ଞା ନେଇ ଶତସୁତ—
ସଙ୍ଗେ କାରାଗାରେ କଲ ପିଣ୍ଡ ପୂତ ।

ବସି ଏଥି ସଦା ରହିଛି ଅନାଇଁ
କାରାଗାର ଛିଦ୍ର ତୁମ ଆଡ଼େ ଭାଇ !

ଅରଟ ଚଳାଅ ପ୍ରତି ଘରେ ଘରେ,
ଗ୍ରାମର କଳହ ତୁଟାଅ ଗ୍ରାମରେ ।

ଚାଲ ସତ୍ୟପଥେ ନାହିଁ ଡର ଭୟ,
ଅସହଯୋଗରେ ବିଜୟ ନିଶ୍ଚୟ ।

ଛାଡ଼ ଜାତ ମାତ ଭେଦ ଅହଙ୍କାର,
ହେଉ ମାଳାଚକ୍ରୁଁ ସମତା ପ୍ରଚାର ।

ଖଣ୍ଡିଗଣ ଭେଦ ଅସ୍ପୃଶ୍ୟା-ମନ୍ତ୍ର
ଜାଗୁ ପୁଣି ଥରେ ଉତ୍କଳ-ଅନ୍ତର ।

ନୀଳାଚଳନାଥ ପ୍ରଭୁ ଶ୍ରୀନିବାସ
ପୂର୍ବେ କେବେ ଆଶା ରଖ ଏ ବସ୍ତୁଙ୍କ ।" ୨୭ ।

( ୪ )

ଭାରତେ ଉତ୍କଳ ମହା ପୁଣ୍ୟଧାମ,
ଭାରତ ପାଞ୍ଜିରେ ନ ଥିଲା ତା ନାମ,
ସାହସ, ସ୍ୱାତନ୍ତ୍ର୍ୟ, ଧନ, ମାନ ବଳେ
ଉତ୍କଳର ନାମ ସମସ୍ତଙ୍କ ତଳେ ।
ଭାରତ ଜାତୀୟ ମହାସମ୍ମିଳନେ
ନ ବସେ ଉତ୍କଳ ସ୍ୱତନ୍ତ୍ର ଆସନେ,

ତେଣୁ ଜଗନ୍ନାଥ କରୁଣାନିଧାନ
କରୁଣା କଟାକ୍ଷେ କଲେ ଅବଧାନ ।
ଅସହଯୋଗର ପବନ ସହିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧି ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଧରି
କୁମାରିକା ଯାଏ ଖେଳିଲା ଲହରୀ ।
ଉତ୍କଳେ ସେ ପୁଣ୍ୟ ସ୍ରୋତ ଶତ ଧାରେ
ବହେ ପୁରପଲ୍ଲୀ କାନ୍ତାରେ ପ୍ରାନ୍ତରେ ।

ଉତ୍କଳେ ଅସଙ୍ଗ-ପ୍ରବାହେ 'ଭରତ
ବାହୁଛନ୍ତି ଯେଉଁ ସ୍ୱରାଜ୍ୟ-ବୋଇତ,
ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡ଼ି ଥିଲି ଦାଣ୍ଡ-ମଙ୍ଗ ପ୍ରାଣପଣେ ।
ସ୍ୱରାଜ୍ୟ ବଇଁଶ ଦଳ ହାତେ ଅଛି,
ମୋ ହାତେ ଲାଗିଛି ଏବେ ଲୁହାକଡ଼ି ।
ଆଜି କେତେ ଜଣ ନାଉରିଆ ଭାଇ
ମୋ ସଙ୍ଗରେ ସମ ଦଶା ଛନ୍ତି ପାଇ ।
ଉତ୍କଳବାସୀ ଏ 'ଦଶା' ଦେଖିଣ
ନୟନରେ ବାରି ଭରି କି ହୋଇ ଦୀନ ?
କର କି ଭାବନା ଭାଗ୍ୟର ବନ୍ଧୁଟେ
ଚଳିବ ସ୍ୱରାଜ୍ୟ-ବୋଇତ କେମନ୍ତେ ?
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ;
ଉତ୍କଳର ନେତା ନିଜେ ନାରାୟଣ ।
ଇତିହାସେ ଶୁଣିଅଛ ଜନଶ୍ରୁତି
କାଞ୍ଚି ଯୁଦ୍ଧ କାଳେ ଉତ୍କଳ ବିଭୂତି,
ଶୁଣିଛ ତ ପ୍ରଭୁ ମାଳାଦ୍ରିନାୟକ
ବିଜେ ଧରି ହାତେ କୃପାଣ ଶାୟକ,

ଉତ୍କଳ ସୂର୍ଯ୍ୟଙ୍କ ସେନାପତି ପଣେ
ହୋଇଥିଲେ, ବଳେ ସମରାଙ୍ଗଣେ ।
ଉଡ଼ାଇ ଉତ୍କଳ ଜୟ-ବୈଜୟନ୍ତୀ
ଆଜଯାଏ ଏହା ଗାଏ ଅମୃତବନ୍ତୀ ।

ଏବେ ସୁଦ୍ଧା ଦେଖ ନୀଳାଚଳେ ଯାଇ
କନା ଧନା ଘୋଡ଼ା ପଛେ ବେନି ଭାଇ,
ବୀରମୂର୍ତ୍ତି ଦେଖ ଯେହ୍ନେ ଅଗ୍ନି-ଶିଖା
ଯେହ୍ନେ ମୂର୍ତ୍ତ୍ୟ ମାରେ ତାମ୍ବର ଅଣିକା
ଏ ଛନ୍ଦ-ତ ନୁହେ ଶିଳ୍ପୀର କଳ୍ପନା;
ଏ ସତ୍ୟର ସାକ୍ଷୀ ମାଣିକପାଟଣା ।

ଏହ୍ନି ସେ ଉତ୍କଳ ପୁଣ୍ୟ ଦେବସ୍ଥଳୀ,
ହୋଇଛନ୍ତି ଠୁଳ ପଞ୍ଚ ତୀର୍ଥାବଳୀ ।
ତା-ମଧ୍ୟେ ଶ୍ରେଷ୍ଠ ପୁଣ୍ୟ ନୀଳାଚଳ
ଭାରତର ଧର୍ମ-ହୃଦ-ଶତଦଳ ।
ଏଠି ନୀଳାଚଳେ ସ୍ୱୟଂ ଜଗନ୍ନାଥ,
ତେବେ କାହିଁ କହ ଉତ୍କଳ ଅନାଥ ?

ନାହିଁ ପୂର୍ବ ବଳ, ନାହିଁ ପୂର୍ବ କର୍ମ,
ନାହିଁ ପୂର୍ବ ସତ୍ୟ, ନାହିଁ ପୂର୍ବ ଧର୍ମ ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ ଏବେ ନୀଳାଚଳପତି ।

ମାତ ଭୁଞ୍ଜ ଯାଇ, ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।

କ୍ଷୀଣ ହେଲେ କେବେ ଧାର୍ମିକ ଶକତି
ଆସନ୍ତ ଉତ୍କଳେ ପ୍ରଭୁ ଜଗପତି,

ସତ୍ୟଧାମୁ ଛାଡ଼ି ରତ୍ନସିଂହାସନ
କରିବାକୁ ଧର୍ମନିଷ୍ଠ ସମର୍ଥନ ।

ଏ ବିଶ୍ୱାସେ ମନ ଦୃଢ଼ କର ଭାଇ,
ନେତାର ଅଭାବ ଲାଗି ଭାବ ନାହିଁ ।

କର୍ମଭୂମେ ଜଏ ନେତା ହେବା ମତ,
ସରବେ ନମନ୍ତୁ ବିଧି-ନିୟୋଜିତ ।

ଉତ୍କଳନିବାସୀ ସର୍ବ ନରନାରୀ,
ଯେବେ ହେ ଏ ବାଣୀ ହୃଦେ ଗୁନ୍ଥାନ୍ତି
ଦଗଧ ହେଉଣ ହେଉ, ଭସ୍ମ ହେଉ ସାର
ସ୍ୱରାଜ୍ୟ ସାଧନେ କେବେ ହେଁ ନ ଡର ।

ନ ଛାଡ଼ ସାହସ, ନ ହୁଅ ନିରାଶ,
ହେଲେ ହେଉ ପଛେ କାରାଗାର ବାସ ।
ନ ହେଉ ସ୍ୱରାଜ୍ୟ ଶାନ୍ତି-ସତ୍ୟ-ପଥ
ଲଙ୍ଘି ସିଂହଦ୍ୱାରେ ନନ୍ଦିଘୋଷ ରଥ ।" ୩୭ ।

( ୪ )

"ଶାସନ-ରକ୍ଷକ କର୍ତ୍ତୃପକ୍ଷ ଦଳ
ନେଇଛନ୍ତି ମୋତେ ଛଡ଼ାଇ ଅଞ୍ଚଳ ।

କଷ୍ଟି ଆସିବେ ସେ ଆଜ କାରାଗାରେ
ତାଙ୍କ ବନ୍ଧୁ ଦୂରେ ଉତ୍କଳ ବାହାରେ ।
ନ ଦେଖିବେ ବୋଲି କେଉଁ ଦେଶଭକ୍ତ
ଗଭୀର ଝଣିଥେ ନଅନ୍ତ ଲୁଚଇ ।
ନଅନ୍ତୁ ଯେପରି ରଖନ୍ତି ସେ ଭଲେ,
ସେଥିଲାଗି ମୋର ଦୁଃଖ ନାହିଁ ତିଳେ ।
ମାତ୍ର ତାଙ୍କୁ ମୁଁ ପାଇଛି ସେ ଦୂରେ
ବାଜଲେ ଏ ବାର୍ତ୍ତା କାଲି ପଲ୍ଲୀପୁରେ,
ଜାଣେ ଉତ୍କଳର କେତେ ନରନାରୀ
ବ୍ୟଥିତ ପରାଣେ ହେବେ ନଷ୍ଟେ ଧାରି ।
ଜନ୍ମଗଣେ କହିବେ କେତେ ଆହା ଆହା,
ଆନେ ବୋଲିବେ ସେ ପଥେ ଫଳ ତାହା ।
ଗ୍ରାମୁଁ ଗ୍ରାମାନ୍ତରେ ଗଲେ ଏ ସମ୍ବାଦ
ପଲ୍ଲୀ ନରନାରୀ ଭଜିବେ ବିଷାଦ ।
କେଜାଣି କେ ଅବା ପାଇ ବୃଥା ଭୟ
ଅସତ ଯୋଗରୁ ଛାଡ଼ିଦେବେ ଲୟ—
ଏ ଭାବନା ଏକା ମନ୍ଥେ ମୋ ଅନ୍ତର
ନିଜ ନିର୍ବାସନେ ନୁହେ ମୁଁ କାତର ।
ମନେପଡ଼େ କେତେ ଅଞ୍ଚଳର ଭାଇ
ତ୍ରାକୁଷ୍ଟେ କେଣେ ଥରେ ଗିବା ଯାଇଁ ।

କେତେ କେତେ ଗ୍ରାମେ ବୁଲି ଦ୍ୱାର ଦ୍ୱାର
କହୁଛ ସ୍ୱରାଜ୍ୟ-ଶୁଭ ସମାଚାର ।
ତଥାପି ରହୁଛ କେତେ ସ୍ଥାନ ବାକି,
ମୋ ଯିବାକୁ ଲୋକେ ରହିଥିଲେ ଡାକି ।
କେବେ ଫେରି ପୁଣି ଯାଇ ତାଙ୍କ ପାଶେ ।
କ୍ଷମା ମାଗିବି ମୋ ବିଳମ୍ବ ସକାଶେ ।
ଦେଖିବି କେବେ ସେ ପ୍ରିୟଜନ ମୁଖ,
ଏ ଭାବନା ଏବେ ଜନମାଏ ଦୁଃଖ ।
ହେ ଉତ୍କଳବାସୀ, ମୋ ଭାଇ ଭଉଣୀ
କରିଅଛ ସ୍ନେହେ ମୋତେ ଚିର ଋଣୀ ।
ଯାଇଅଛି ଯହିଁ ପାଇଛି ଆଦର
ଶୁଣିଛ ଶ୍ରଦ୍ଧାରେ ସନ୍ଦେଶ ମୋହର ।
ତୁମ୍ଭ ହିତେ ମୋର ଦୁର୍ବଳ ପ୍ରୟାସ
ଜାଣେ କରିଅଛ ମନେ ଏ ବିଶ୍ୱାସ ।
ମୋ ସମ୍ବଳ ତୁମ୍ଭ ସେନେହ ଶରଧା
ସୁମରୁଥିବି ମୁଁ ଯହିଁ ଥିଲେ ସଦା ।
କିନ୍ତୁ ମୋ ବିରହେ କେବଳ ଶୋଚନା
କାହାରେ ନ ଦେବ ଏ ପ୍ରାଣେ ସାନ୍ତ୍ୱନା ।
ଦେଖିଛି ଉତ୍କଳେ ଯେ ଦୃଶ୍ୟ ନୟନେ
ଭାସଏ ତା ଭୂରି ସ୍ୱପନେ ଶୟନେ ।

ଦେଖେ ଦେଶେ ଦେଶେ ଦୁଃଖୀ ଭଲ ଭଲ ଲୋକ

ନ ପାନ୍ତି ଦୁ' ବେଳା ପେଟପୂର ଭୋଗ ।

ଥିଲେ ଯେଉଁ ମଲ୍ଲ ଉତ୍କଳ ସୈନିକ;

ପାଇକ ପ୍ରଧାନ ମାଗୁଛନ୍ତି ଭିକ ।

ଦେହେ ନାହିଁ ମାଂସ ଦୋହଲୁଛି ଜଙ୍ଘା,

ଅନାହାରେ ଆହା ନ ଉଠଇ ଅଣ୍ଟା,

ଅର୍ପନ୍ତି ଯା ଭୃତ୍ୟେ ମାର ମୁଣ୍ଡଟାଳ,

ଦୁଷ୍ଟ ମହାଜନ, 'ଗ୍ରାମକଣ୍ଟକ ପାଳ,'

ପ୍ରଜା ରକ୍ତ ଶୋଷି କେତେ ଜମିଦାର

ହରନ୍ତି ସର୍ବସ୍ୱ ବଜାଇ ପାହାର ।

ଉତ୍କଳର କେତେ କନ୍ୟା ନାରଖାର

ନ କରନ୍ତି ପେଟ ପୂରାଇ ଆହାର ।

ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ,

ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।

ଚିକିତ୍ସା ନ ପାଇ ଘରକଣେ ପଡ଼ି

ରୋଗ, ଅନାହାରେ କେବା ମରେ ଭଜି

ଉଦରଜ୍ୱାଳାରେ କେତେ ନରନାରୀ

ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।

ଏତେ ଅଛି ଉଡ଼ କାହିଁ ନା ବୁଝଇ

ଶୋଣ ଏସପେ ଏବେ ନଷ୍ଟାଟିଆ ।

ପଶିଗଲେ ଗ୍ରାମେ ନ ଶୁଭେ ଶବଦ,<br>
ବେଦମନ୍ତ୍ର କବା ଭାଗବତ ପଦ ।<br>
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,<br>
ଶିଶୁଖେଳେ ଦାଣ୍ଡ ନ ହୁଏ ଉଛେଳ ।<br>
ଶୋଉଅଛୁ ଭଙ୍ଗି ଗ୍ରାମ ଦେବାଳୟ,<br>
ପୂରିଲଣି ପଙ୍କବଧେ ଜଳାଶୟ ।<br>
ଗ୍ରାମର ଗୋକୁଳ କ୍ରମେ ଅତି କ୍ଷୀଣ,<br>
ଯେଣେ ଅନାଇବ ସବୁ ଶ୍ରୀହୀନ ।<br>
ନାହିଁ ଜନମୁଖେ ସତ୍ୟ-ଧର୍ମ କାନ୍ତି,<br>
ନାହିଁ ହୃଦେ ଶୌଚ ପ୍ରାଣେ ସ୍ନେହ ଶାନ୍ତି ।<br>
ଛଳ ପ୍ରବଞ୍ଚନା କଳେଶ-ବଇର<br>
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।<br>
ଆତ୍ମୀୟ ସୋଦର ପ୍ରତିବେଶୀ ସଙ୍ଗ<br>
ନିଜ ସ୍ୱାର୍ଥ ଲାଗି ଲଗାନ୍ତି ଭଙ୍ଗ ।<br>
ରାଜଦରବାରେ ବୃଥା ଅର୍ଥକ୍ଷୟ,<br>
ଶେଷେ ସମଦଶା ଜୟ-ପରାଜୟ ।<br>
ଶାସନ-ଭୂତକେ ସର୍ବେ ଅବସନ୍ନ<br>
ବ୍ୟାଧଜାଲେ ପଡ଼ି କପୋତ ଯେସନ,<br>
ଜାଲେ ହଣାହଣି ସ୍ୱଦଶା ନ ଜାଣି<br>
ଫଳେ ସର୍ବନାଶ ଧର୍ମ-ଅର୍ଥହାନି ।

ଦେଖିଣ ସ୍ୱଦେଶୀ ଦ୍ରବ୍ୟ ଝଲମଲ
ଲୋଡ଼ନ୍ତି ପତଙ୍ଗ ଯେସନ ଅନଳ ।

ହେଉଅଛି କଂସା ହଣ୍ଡା ଜମିବିକା,
ବୁଡ଼ିଲାଣି କେତେ ଜାତିର ଜୀବିକା ।

ଏହା ପରେ କ୍ରମେ ବଢେ କର-ଦାଉ,
ଏ ଦଶା ରହିବ କେତେ ଦିନ ଆଉ ?

ସରିଲାଣି ମାଲ ପଡ଼ିଅଛି ପିଠା;
ନାହିଁ ଗର୍ଭେଶ୍ୱର ଦଂଶ ପୋଲ ପିଠା ।

ଉଭେଇଛି ଝଣ୍ଡା ଦୋହଲାଇ ଖପ;
ରହିଛି ଅଙ୍ଗାର ନାହିଁ ତେଜ ତାପ ।

ପଡ଼ିଅଛି ପିଣ୍ଡ ଯାଇଛି ପରାଣ;
ଦେଖିଲେ ଏ ଦଶା ବୁଡ଼େ ବୁଦ୍ଧି-ଜ୍ଞାନ ।

ସଢ଼ି ମଞ୍ଜି ଗଛେ ରହିଛି ବକଳ,
ସୁନ୍ଦର ସକଳ ଶକଟ ବିକଳ !

ଫେରିବ ଏ ଦଶା ସୁଖି ହେବ ପ୍ରଜା,
ଜହ୍ନୂନା ଧାନ କ ସତେ ହେବ ରଜା ?

ଜଙ୍ଗଲର ଏହି ଶବ ନବାରୁଣ
ନାଚିବ ମୋ ଆଖି ଆଗେ ପୁଣ ପୁଣ ।

ଏବେ କାରାବାସ ଦୂର ପରଦେଶ
ଦେଶଦଶା ତହିଁ ମନେ ଦେଲେ କ୍ଳେଶ;

କି ଭାବ ପବନେ ପାଇବ ଆଶ୍ୱାସ,
ପୋଛୁଛ ଲୋତକ ଧରି କି ସାହସ ?
ହେ ଉତ୍କଳବାସୀ ଆତ୍ମୀୟ ସ୍ୱଜନ !
ମୁଁ ଯେବେ ତୁମ୍ଭର ସେନେହ ଭାଜନ,
କର ଯୋଡ଼ି କରେ ବିନତି ଏତିକି,
ଅସହଯୋଗରେ ରଖିବ ମତିକି,
ଢାଳିଦିଅ ପ୍ରାଣ ସ୍ୱରାଜ୍ୟ-ସାଧନେ,
ଆଶ୍ୱାସିବ ଯେବେ ମୋତେ ବନ୍ଦୀବାସନେ ।

ନ ହୁଅ ବିରସ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।
ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୁକର ।

ଆଲୁଅ ଅନ୍ଧାର ଖେଳେ ଲୁଚକାଳି,
ଆସିବ ଆଲୁଅ ପଡ଼ିଲାଣି ପାଳି ।
ପହଞ୍ଚିଛି ଏବେ ସେ ମାହେନ୍ଦ୍ର ବେଳା
କର ନାହିଁ ଭାଇ ! ଏତେବେଳେ ହେଳା ।
ଉଇଁ ଆସୁଅଛି ସ୍ୱରାଜ୍ୟ-ତପନ,
ଭାରତେ ଜାଗ୍ରତ ନରନାରୀଗଣ ।
ଘୁମାଇ ନ ରହ ଏ ସମୟେ ଆଉ,
ଉଠ ଉଠ ବେଗେ ବେଳ ଆଉଁ ଥାଉଁ ।

ଥରେ ଭଲ କରି ମନରେ ବିଚାର
କପାଇଁ ମହାତ୍ମା ଏତେ ହାରଖାଉ !

କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ
ତେଜି ଧନ ଜନ, ଅଶନ ବସନ;

କାରାଗାରେ ବସି ନୀରବେ ଏକାକୀ
ଧ୍ୟାନମଗ୍ନ ଏବେ ମୁଦି ବେନି ଆଖି ।

ମହାତ୍ମା ସାଧନ ମହାତ୍ମା ଲକ୍ଷଣ
ନ ଯାଏ ଜଗତେ କେବେ ଅକାରଣ ।

ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର ।

ଏ ବିଶ୍ୱାସେ ସର୍ବେ ଦୃଢ଼ କରି ମନ
ସ୍ୱରାଜ୍ୟ ଧରମ କର ଆଚରଣ ।

ବିଦେଶୀ ଅପେଧ ବସ୍ତ୍ର ଛାଡ଼ି ଆଗେ
ହାତ ସୂତା ଲୋଡ଼ା ଏ ସ୍ୱରାଜ୍ୟ-ଲାଗେ ।

ପିନ୍ଧ ଦେଶୀ ଲୁଗା ଦେଇ ଅଙ୍ଗ ଶୁଦ୍ଧି,
ମାମଲାରେ ଆଉ ନ ଖେଳାଅ ବୁଦ୍ଧି ।

ଗ୍ରାମେ ପଞ୍ଚ ପର ପରମ ଈଶ୍ୱର
କର ପୁଣି ଗ୍ରାମେ ସ୍ଥାପନା ତାଙ୍କର ।

ସର୍ବେ ବାନ୍ଧି ମେଳ ତାଙ୍କୁ ମାନ ଦେଇ,
ଫୁଟାଇବ ଗ୍ରାମେ ପୁଣି ନବ ବଳ ।

ନ ଲାଗିବ ମିଥ୍ୟା ଛାଲ ପ୍ରବଞ୍ଚନ,
ନ ଖାଇବେ ଭୂତ ତୁମ ଗ୍ରାମଧନ ।"

× × × ×

"ଗ୍ରାମ ତନ୍ତ୍ରରେ ସକଳେ ସମାନ
ଛୁଡ଼ ମନୁ ବଡ଼ ସାନ ଅଭିମାନ ।
ସ୍ୱରାଜ୍ୟ-ଧରମେ ନାହିଁ ଭେଦ ଜ୍ଞାନ,
ସମସ୍ତେ ସେ ଏକ ମାତାର ସନ୍ତାନ ।
ଏକା କୋଳେ ଜନ୍ମ ଏକା କୋଳେ ଖେଳ,
ଏକା କୋଳେ ଶେଯ୍ୟା ହେଲେ ଶେଷ ବେଳ ।
ଗୃହରେ ଅହିଂସା, ଗ୍ରାମେ ଚର୍ଖାସୂତ,
ଗ୍ରାମବାସୀଗଣ ମଧ୍ୟେ ଏକମତ,
ସ୍ୱରାଜ୍ୟ-ସାଧନ ଏହି ତିନ ପଦ,
ପାଳିଲେ ଖଣ୍ଡିବ ଉତ୍କଳ-ବିପଦ
ଘୁଞ୍ଚିବ ଉତ୍କଳ ଦୁଃଖ ଦରିଦ୍ରତା
ଉଜ୍ଜ୍ୱଳିବ ଗ୍ରାମ, ହସିବେ ଦେବତା ।"
"କହିଲ କ କେତେ ହୃଦୟ ଆବେଗେ
ଛୁଟିଲେ ଏ ଦାରୁଣ ରେଳ କେଡ଼େ ବେଗେ !
ଭେଟିବଁ ଆସିଅଛୁ ଏବେ ମହାନଦୀ
ଜଳରେ ଉତ୍କଳ ପୂତ ବସ୍ତ୍ରପ୍ରଦା ।

ଆଗରେ ଦିଶେ ଏ ଶୈଳ ଶନାପୁର,
ନମେ ପଦେ ପ୍ରଭୁ ବିଘ୍ନବିନାଶକ ।
ଆତିଥ୍ୟ ତବ ପୂଜା ଶୁଭ ଅନୁଷ୍ଠାନେ,
ଯାଉଛୁ ଉତ୍କଳ ଛାଡ଼ି ଦୂର ସ୍ଥାନେ ।
କର କୃପା ମୋର ଶୁଭ ହେଉ ପଥ,
କାରାଗାରେ ମୋର ପୂର୍ଣ୍ଣ ମନୋରଥ ।
ଯାଇଛି ଏ ପଥେ କେତେ ଥର ଆଗେ,
କିପାଇଁ ଚଞ୍ଚଳ ମନ ଆଜି ଲାଗେ ?
ଲାଗେ ଦୃଶ୍ୟଗଣ କିଛି ଅତି ପ୍ରିୟ,
ଅକୁହା ରହସ୍ୟ କିବା ଗୋପନୀୟ ।
କାହାକୁ ଦେଖନ୍ତି ପର ଆଉ ଥରେ,
ନିଶ୍ଚିତ କିଛି ତ ନ ପଡ଼େ ମନରେ ।
ଜାଣୁଛି ଏ ମୋର ନିଜ ଦୁର୍ବଳତା,
ମାନବ ହୃଦୟ ସହଜ ମମତା ।
ମମତାର ଆଉ କାହିଁ ଅବକାଶ,
ପ୍ରଭା ବଳ ହୃଦେ ପରମ ବିଶ୍ୱାସ ?
ମାନବ ଜୀବନ ନୁହେ ମିଥ୍ୟା ଜ୍ଞାନ
କିବା କୁହମାତ୍ର କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁଚିନ୍ତ ମାନବର ସତ୍ତ୍ୱ ।

ଯା ଜୀବନ-ଗତି ତତ୍ତ୍ୱ-ଅଭିମୁଖୀ,<br>
ସେହି ଏକା ଦୁଃଖୀ, ସେହି ଏକା ସୁଖୀ ।<br>
ତତ୍ତ୍ୱର ସାଧନେ କୃତ୍ୟାକୃତ୍ୟ ଜନ;<br>
ଲଭଇ ମରଣେ ଅମୃତ-ଜୀବନ ।<br>
ସତ୍ୟ ସନାତନ ପ୍ରଭୁ ଭଗବାନ,<br>
ଏ ଭାବେ କର ମୋ ହୃଦ ବଳୀୟାନ ।<br>
ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ,<br>
ଭାରତେ ସ୍ୱରାଜ୍ୟ ଜଗତ-କଲ୍ୟାଣ ।<br>
ଜଗତ-ସରସେ ଭାରତ କମଳ,<br>
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।<br>
ଥିଲେ ଯହିଁ ତହିଁ ଭାରତ-ବକ୍ଷରେ<br>
ମହିତ ମୁଁ ଅଛୁ ଆପଣା କକ୍ଷରେ ।<br>
ମୋ ନେତେ ଭାରତ-ଶିଳା ଶାଳଗ୍ରାମ,<br>
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟ ଧାମ ।<br>
ସକଳ ସଲିଳ ପୁଣ୍ୟତୀର୍ଥ ଜଳ,<br>
ପ୍ରତି ଧର୍ମାଳୟ ମୋର ନୀଳାଚଳ ।<br>
ଭାରତେ କୈବଲ୍ୟ ସକଳ ଆହାର,<br>
ଭାରତେ ଶ୍ମଶାନ ସ୍ୱରଗ ଦୁଆର ।<br>
ଶ୍ରୀହରି ଚନ୍ଦନ ଭାରତ-କର୍ଦ୍ଦମ,<br>
କାରାଗାର ମୋର ସ୍ୱରାଜ୍ୟ ଆଶ୍ରମ ।

ଭାରତର ପ୍ରତି ବୃକ୍ଷ ଲତାବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ
ନୀଳାଚଳ ଶୁଦ୍ଧ ଭାରତ-ହୃଦୟ ।
ଅଚଳେ ସର୍ବ ତୀର୍ଥ ଭାରତ ଶୟନେ,
ମଣ୍ଡିତ ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ !
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।" ୧୦୪ ।

( ୭ )

"ପହଞ୍ଚିଲୁ ଯେବେ ଜେନାପୁରେ ଆସି,
ପଣ୍ଡିତ ମୋର ଜେନାପୁରବାସୀ ।
ଆସିଥିଲା ଥରେ ଦୁଇ ବର୍ଷ ତଳେ
ବୁଡ଼ିଥିଲା ଜେନାପୁର ଯେବେ ଜଳେ ।
କେତେ ଗ୍ରାମ, କେତେ ଘର, କେତେ ଧନ
ହୋଇଥିଲା ବନ୍ୟା-ସ୍ରୋତେ ଉଚ୍ଛନ୍ନ ।
କେତେ ଗ୍ରାମଦାଣ୍ଡେ ବୁଲୁଥିଲା ସୁଅ,
କେତେ ନୟନରୁ ବହୁଥିଲା ଲୁହ ।
କେତେ ନରନାରୀ, କେତେ ଗୋରୁଗାଈ
ମରୁଥିଲେ କଷ୍ଟେ ଆହାର ନ ପାଇ ।

ପଡ଼ିଗଲେ ମନେ ସେ ବେଳ ଘଟଣା
ହୃଦେ ହୁଏ ଏବେ ଦାରୁଣ ବେଦନା ।
ବନ୍ୟା ବୃଷ୍ଟିପାତେ ଉତ୍କଳ-ଦୁର୍ଦ୍ଦଶା
ବର୍ଣ୍ଣିଲେ ମତି ହୁଅଇ ବିବଶା
ଚିଲିକାକୂଳରୁ ସ୍ୱର୍ଣ୍ଣରେଖା ଯାଏ
ମୁହୂର୍ତ୍ତିକେ ମୋର ଆଖି ବୁଲିଯାଏ ।
ଯେତେ ସ୍ଥାନେ ଯେତେ ଲୋକଙ୍କ କଷଣ
ଦେଖିଛି ପଲକେ ହୁଅଇ ସ୍ମରଣ ।
ଦୁର୍ଭିକ୍ଷ ବନ୍ୟାର ଚିର ସହଚର,
ଏକ ପଛେ ଅନ୍ୟ ଆସେ ନିରନ୍ତର ।
ସହି ସହି ବନ୍ୟା-ଦୁର୍ଭିକ୍ଷ-ପ୍ରହାର
ଉତ୍କଳର କେତେ ପଲ୍ଲୀ ଛାରଖାର ।
କେତେ ଗ୍ରାମ ଶୂନ୍ୟ, କେତେ ଘର ଖାଲି,
କେତେ ଶସ୍ୟକ୍ଷେତ୍ରେ ପୂରିଅଛି ବାଲି;
ନିରାଶା ଆତଙ୍କେ ପ୍ରଜା ଅବସନ୍ନ,
ମରୁଛନ୍ତି କେତେ ନ ପାଇଣ ଅନ୍ନ ।
ପଡ଼ଇ ମନେ ମୋର ଯେବେ ସିନ୍ଧୁକୂଳେ
ନୀଳାଚଳେ ଗାନ୍ଧୀ ଥିଲେ ପତ୍ନୀ ଭୂଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ
ଛାଡ଼ିଥିଲେ ହୃଦେ ଗୁରୁତର ଶ୍ୱାସ ।

କେତେ ନରନାରୀ ବୃଦ୍ଧ ଯୁବା ବାଳ,

(ଅନାହାରେ ଯେହ୍ନ କେବଳ କଙ୍କାଳ)

ଦେଖିଣ ମହାତ୍ମା କାତର ଅନ୍ତରେ

କହୁଥିଲେ ମତେ ଦୁଃଖେ ଏକାନ୍ତରେ—

'ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ

ଅନଶନେ ଆଜ ତେଜନ୍ତି ଜୀବନ ।

ବଞ୍ଚିବାରୁ ବଳ ଦେଖି ଏ କଷଣ

ଶତ ଗୁଣ ଶ୍ରେୟ ମଣେ ମୁଁ ମରଣ ।

ମାତ୍ର ମୋ ପରାଣେ ରହୁଛି ଭରସା,

ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।

ଏସବୁ ଯାତନା ନର କର୍ମଫଳ

ହୋଇଛି ଏ ଦେଶେ ପାତକ ପ୍ରବଳ ।

ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି

ସତ୍ୟେ ଅନୁରାଗ ଧର୍ମେ ଦୃଢ଼ ବୁଦ୍ଧି,

ମେଣ୍ଟିବ ଦୁର୍ଭିକ୍ଷ ଦୁଃଖ ଯିବ କ୍ଷୟ,

ଆସିବ ସୁଦିନ ହେବ ସୁଖୋଦୟ ।'

ଛାଡ଼ିବାକୁ ଗାଡ଼ି ଦେଲାଣି ସଙ୍କେତ,

ବାଜେ ଟେଷ ଘଣ୍ଟା, ଉଡ଼େ ନାଲକେତ ।

ସୁବିଧା ଥିଲେ ମୁଁ ଓହ୍ଲାନ୍ତି ଏଠାରେ,

ଦେଖିଯାନ୍ତି ଜେନାପୁର ଏବେ ବାରେ ।

ବୁଲି ବ୍ରାହ୍ମଣୀର ତୀର ଜନପଦେ,
ଛଦାସ୍ତୁ ନଅନ୍ତ ନଷ୍ଟ ପଦେ ପଦେ ।

ଦେଖନ୍ତୁ କପଟ ଅଛନ୍ତି ମୋ ଭାଇ,
ଦଇବା ମାନୁଷୀ ଦାଉ ଧକ୍କା ଖାଇ ।
ବ୍ରାହ୍ମଣୀ ବାଲିରେ ସାନ୍ଧ୍ୟ ନିର୍ମିକନେ
କଷ୍ଟ ପାଉଥାନ୍ତି ଥିଲି ଯାହା ମନେ ।
ବୁଲିଲି ପରା ଏ ନିଦାରୁଣ ଗାଉଁ,
କେନାପୁର ମଠେ ଅଛିଲି କି ଗୁଡ଼ି ?
ଏବ୍ବ ସେ ଚଢ଼ିଲି କେନାପୁର ସେତୁ
ବ୍ରାହ୍ମଣୀ ବଣାକ ବକ୍ଷେ ଟୃମଙ୍କରୁ ।

ଥାଅ ଗୋ ବ୍ରହ୍ମଣୀ ପୀନପୟୋଧର !
ହେଜ ଭୁମ୍ଭ ଯୋଗେ ଜଙ୍ଗଲ ଉର୍ବର,
ଖରସ୍ରୋତା ଧନଙ୍କ କର ଭୁ ମନ୍ତ୍ରଣା ।
ଚଟବାଧୀ ଜାନ ନ ଢଅ ଯନ୍ତ୍ରଣା ।
କେନ୍ଦ୍ରାପଡ଼ା, ଯାଜପୁର ପ୍ରଜାକୁଳ,
କର ନାହିଁ ବନ୍ୟା ଜପ୍ତ ଚେତ ବ୍ୟାକୁଳ ।
ସେ ଭାଇ ସକଳ ମୋର ପ୍ରିୟତମ,
ତାଙ୍କ ସେବା ମୋର ଜୀବନେ ପ୍ରଥମ ।
ଖରସ୍ରୋତା ଭୁମ୍ଭ ତୀର ସନ୍ଧସେ
ମାଗୁଛି ବେଦଙ୍କୁ ନମସ୍କାର କରି—

ତରଙ୍ଗ-ସ୍ୱପ୍ନଲୋକେ ଜଳ ଜଳ ତାନେ

ନିଅ ମୋ ସନ୍ଦେଶ ସେ ଭାଇଙ୍କ ତାନେ ।

ଭ୍ରାମୁଁ ଗ୍ରାମାନ୍ତରେ ପବନ ଲହରେ

ଉଡ଼ନ୍ତେ ଏ ବାର୍ତ୍ତା ଖେଳୁ ଘରେ ଘରେ ।

ଥାଅ ଯାଜପୁର କେନ୍ଦ୍ରାପଡ଼ା ଭାଇ;

ଦେଖାହେବ କେବେ ଲେଉଟିଲେ ଯାଇ ।

ବନ୍ୟାରୁ ବରଞ୍ଚ ନ ପାଇ ଶକତ

ଜାଣେ ମୁଁ ଭେଟିଛ ବିଷମ ବିପତ୍ତି ।

କାରାଗାରେ ମୋତେ ପଡ଼ୋଶୀ ଭ୍ରମର

ଦେଉଛନ୍ତି ଅଗ୍ନି ଉତ୍ପାତ ଖବର ।

କେ ପୋଡ଼ିଲା ଘର, କେ ସହେ ଗଞ୍ଜଣା ।

ଏ ବିଚିତ୍ର ରାଜ୍ୟ ଅନ୍ଧ ବୁଝାମଣା ।

ହେଲା ଗୃହଦାହ ସଙ୍ଗେ ଅର୍ଥନାଶ,

ପରେ ପ୍ରାଣପୀଡ଼ା ପୁଣି କାରାବାସ ।

କାହେ ଅଗ୍ନି ଯେହୁ ଦେଲା ଆତତାୟୀ

ତାର ଖୋଜା ନାହିଁ, ଗଲା ସେ ବା କାହିଁ ?

ଆହା ଉତ୍କଳର କେତେ ଗ୍ରାମେ ଲୋକ,

ନିରାଶ୍ରୟେ ଆଜି କରୁଛନ୍ତି ଶୋକ !

କାହା ଗୃହ ଭଗ୍ନ, କାହା ଶସ୍ୟ ନଷ୍ଟ,

କାହା ପୁଅ ଭୋଗେ କାରାଗାରେ କଷ୍ଟ !

ଏଥିଲାଗି ଘୃଣା ନ କର ଭାବନା
ଏ ତ ବନ୍ଦୀ ମୋର କୁକର୍ମ ସୃଜନା ।
ନାହିଁ ନିଜ ଦୋଷ ମୋର ଭଲେ ଜାଣ
ଜାଣ କପି କାହିଁ ହେଲ ଏ ଭିଆଣ,
ନ କର ଶୋଚନା ରଖ ଧର୍ମ ସାକ୍ଷୀ,
ଗୂଢ଼ ବ୍ୟୂହ ଭେଦ ସେ ଅଦୃଶ୍ୟ ଆଖି ।
ବନ୍ଧିଲ ଭ୍ରମର ଯେଉଁ ଏ ବଉଁଡ଼ି
ଜାଣ ସେ ପାପୀର ନାହିଁ ଭଲ ଗତି ।
ନିଜ କଲ କର୍ମ ଭୋଗେ ନିଜେ ନର,
ଏଡ଼ି ନ ପାରେ ତା ବ୍ରହ୍ମା ହରିହର ।
ଧର୍ମ-ନିକତିରେ ତୁଳ ଯେ ତଉଲ
ପରମାଣୁ ତହିଁ ଯାଏ ନାହିଁ ଭୁଲ ।
ଇତର ଜନର କଥା କିବା ଛାର,
କେତେ ଜାତି କେତେ ବ୍ୟକ୍ତି ବଳିଆର,
ନିଜ କର୍ମଦୋଷେ ଯାଇଛନ୍ତି ନାଶ,
ପ୍ରମାଣ ତହିଁର ଶାସ୍ତ୍ର ଇତିହାସ ।
ଜତୁଗୃହ ଜାଲ ମାମୁ ଦୁର୍ଯ୍ୟୋଧନ,
ଜାଣିଛ ଲଭିଲ କପରି ନିଧନ ।
ନ ନେଲା ସେ କଂସ କେତେ ଶିଶୁପ୍ରାଣ,
କହ କେତେ ଦିନ ରହିଲା ତା ତାଣ ?

ପଶ୍ଚିମ-ଗଗନେ ହେରଡ଼ ନୃପତି
ଅନ୍ୟ କଂସ ସମ ଦୁରାତ୍ମା ଦୁର୍ମତି ।

ପ୍ରଭୁ ଯୀଶୁ ପ୍ରତି ମନେ ବନ୍ଧି ରୋଷ,
ଶିଶୁ ହତ୍ୟା ଆଦି କଲା ନାନା ଦୋଷ ।

ଅନ୍ୟ ସେହିପରି ମିଶରେ ଫେରସ,
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।

ଶାସ୍ତ୍ର-ସ୍ମରଣର ବୁଝି ଏ ଚରିତ
ନ କର କପଟେ ଚିତ୍ତ ବିଚଳିତ ।

ମନେରଖ ଭାଇ ମହାତ୍ମା ଭାଷଣ;
ଆମ ପାପ ଫଳେ ଆମର କଷଣ ।

ହେଲେ ଆତ୍ମଶୁଦ୍ଧି ସୁନିର୍ମଳ ମତି,
ପ୍ରକାଶିବ ତେଜ ସମ୍ପଦ ଶକତି ।

ଏ ବିଶ୍ୱାସ ସଦା ହୃଦେ ଦୃଢ଼େ ଧର,
ଗୃହଦାସ ଯେଣୁଁ ତ୍ୟଜ ବୃଥା ଡର ।

ବଦେ ପ୍ରଭୁଙ୍କ କଣ୍ଟକି-ପାଷାଣେ;
ପରଖିନ୍ତି ତହିଁ ନରହୃଦ ଠାଣ ।

ବିଦଗଧ ହେଲେ ବିପଦ-ଅନଳେ
ଭସ୍ମ ନୋହି ସେହୁ ହାଜ ଦାଉ ଜଳେ,

ଯେସନ୍ତି ଏକା ଶୁଦ୍ଧ ସୁବର୍ଣ୍ଣ-ହୃଦୟ;
ଲଭେ ଆଶ୍ୱାସନା ଅଭୟ ବିଜୟ ।

ହେଲା ଗୃହେ ଯେଉଁ ଅଗ୍ନି ପ୍ରଜ୍ଜ୍ୱଳିତ
ନୁହେଁ ବୃଥା ତାହା, ବିଧାତା ଇଙ୍ଗିତ ।
ବୁଝିଲେ ଦେଖିବ ତହିଁ ଦୃଢ଼ ସତ୍ତ୍ୱ
ଜ୍ଞାନ ହୃଦେ ଅଗ୍ନି ଶୁଦ୍ଧ କର ତତ୍ତ୍ୱ ।
ବାସ୍ତୁଁ ଲଭିଅଛୁ ବାହ୍ୟ ହୁତାଶନ,
ଅନ୍ତରେ ଅନଳ ଜଳୁ ଅନୁକ୍ଷଣ ।
ସତ୍ୟ-ବହ୍ନି ବଳେ ଦହୁ ମଳମତା,
ପରକାଶୁ ନର-ପରାଣେ ଦେବତା ।
ହେଉ ଗୃହ ନାଶ ଅବା କାରାବାସ,
ଯାଉ ପଛେ ପ୍ରାଣ ନ ଯାଉ ବିଶ୍ୱାସ ।
ସତ୍ୟ-ଶାନ୍ତି-ପଥେ ଚଳ ଅବିରତ,
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଘୁଞ୍ଚୁ ମନୁ ଭୀତି,
ତେଜ ଉଚ୍ଚ ନୀଚ ଘୃଣା ଭେଦ-ନୀତି ।
ବେଶ୍ୟା ନାଚ ନିଶା ଆଦି ଦୁରାଚାର,
ନ କରୁଁ ଦୂଷିତ ଗ୍ରାମ ପରିବାର ।
ଏ ଆସ୍ଥାରେ ହେବ ଜଗତ ମଙ୍ଗଳ,
ଯଥା କାଳେ ମେଘ ବରଷିବ ଜଳ ।
ଧନ ଧାନ୍ୟେ ସୁଖୀ ହେବେ ପ୍ରଜାଗଣ,
ନ ଦେଖ କି ଭାଇ ଏ ଶୁଭ ସୂଚନ ?

ଦେବଦୂତ ରୂପେ ପ୍ରଭୁର ସନ୍ଦେଶ
କହନ୍ତି ମହାତ୍ମା ନିଜ କାର୍ଯ୍ୟ ଶେଷ ।
ହେ ଉତ୍କଳବାସୀ, ସେ ସନ୍ଦେଶ ମାନ,
କର୍ମେ ଲାଗ ସଦା ହୋଇ ସାବଧାନ ।
ଚାଲ ଏହି ପଥେ ମିଳିବ ମୁକତି
ଘେନ ମୋର ଏହି ଉଦାତ୍ତ ବଚନ ।
ହୋଇଅଛି ଏବେ ହବା ଅବସାନ,
ଭଦ୍ରକେ ଆସି ପହଞ୍ଚିଛୁ ଜାନ ।
ଭଦ୍ରକ ମୋର ଅତି ପ୍ରିୟସ୍ଥାନ,
ଏଠା କର୍ମେ ମୋର ପହିଲ ସମ୍ମାନ ।

ଏଠା ବାହାଦୂର ବଡ଼ ପରଚଣ୍ଡ,
ତାଙ୍କ ଦମ୍ଭରେ ମୋ ଆଦ୍ୟ କାରାଦଣ୍ଡ ।
ସାନ ବଡ଼ କେତେ କର୍ମୀ ନିସ୍ବାପର,
ଦେଖିଲେଣି କେତେ ଥର ମାମୁଁ ଘର ।
ତଥାପି ସ୍ୱରାଜ୍ୟ ଯୋଗ ନୁହେଁ ଊଣା,
ବଢ଼ିଲା କର୍ମୀଙ୍କ ବଳ ଚତୁର୍ଗୁଣା ।
ପଡ଼ିଲେ ମଧ୍ୟ ଅଦ୍ଭୁତ ଅନଳେ
ନ ଲିଭି ସେ ସ୍ୱର୍ଣ୍ଣ ଦାଉ ଦାଉ ଜଳେ ।
ପଦାଘାତ କେହି କଲେ ନାଗ-ଚୂଳେ,
ନାଗ କି ପଳାଏ ପସ୍ୱଣ ଆକୁଳେ ?

ଭାରତର କର୍ମୀ ଧନ୍ୟ ତୁମ୍ଭ ବଳ !
ଏପରି ସାଧକ ଲୋଡ଼ଇ ଉତ୍କଳ ।
ତେଜି ସବୁ ମାୟା ପରିବାର ଭୋଗ,
ସାବରମତୀ-ପୁଳିନେ ଆରମ୍ଭିଛ ଯୋଗ ।
'ମନ୍ତ୍ର ସିଦ୍ଧି କିମ୍ବା ଶରୀର ପାତନ'
ଜାଣେ ମୁଁ କହିଛ ଏହି ମହାପଣ ।
ଏହି ପଣ ଏକା ଭାରତ ଜଗତ
ସାଧୁ ସମାଗମେ ଯା ରେଣୁ ପବିତ ।
ନୀଳାଚଳବାସୀ ପ୍ରେମିକ ନିମାଇଁ
ଥିଲେ ପରା ଏଥି କେତେ ଦିନ ପାଇଁ !
ସେ ଶୁଭ ଦିନର ପୁଣ୍ୟ ନିଦର୍ଶନ,
ରଖିଛି ଭାରତ ଜନ୍ମ ଚିର ଧନ ।
ଏବେ ପୁଣି ହେଲେ ଗାନ୍ଧୀ ମହାମତି
ଭାରତ ଅତିଥି ଅହିଂସା ମୂରତି ।
ଭାରତବାସୀ ହିନ୍ଦୁ ମୁସଲମାନ
ଏ ଆତିଥ୍ୟ ନୁହେ ସାମାନ୍ୟ ସମ୍ମାନ
ଉତ୍ତର କାଳକୁ ପୁଅ ନାତି ପାଇଁ
ଏ ସୌଭାଗ୍ୟ ସ୍ମୃତି ରଖିବ କି ଭାଇ ?
ଛାଡ଼ ତେବେ ମନୁଁ ଭେଦ ଅଭିମାନ,
ବେଦ କୋରାନରେ କର ସମଜ୍ଞାନ ।

ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିଆନ
ଶିଖ ଜୈନ ଯେତେ ଭାରତ-ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ-ଜାତି-କୁଳ
ଭାରତ-ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ,
ଏକଇ ଅନୁଡ଼ ଏକଇ ଶ୍ମଶାନ ।
ଏକ କର୍ମକ୍ଷେତ୍ର, ଏକ ମାତୃପଦେ
କର ଏକପ୍ରାଣ ସମସ୍ତେ ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।
ଭଦରଖ ଭାଇ ହିନ୍ଦୁ ମୁସଲମାନ,
ଜାଣେ ମୁଁ ଧରିଛ ହୃଦେ ବଡ଼ ଟାଣ ।
କେତେ ପ୍ରଲୋଭନ; କେତେ ପ୍ରରୋଚନା,
କେତେ ବାଧାବିଘ୍ନ, କେତେ ଭତ୍ସନା,
ଏଡ଼ିଅଛ ସବୁ ନିର୍ଭୀକ ଅନ୍ତରେ,
ଚାଲିଅଛ ଦମ୍ଭେ ସ୍ୱରାଜ-ପଥରେ ।
ରଖ ଏହି ଦମ୍ଭ ଦୃଢ଼ ନାହିଁ ବାଧା,
ହୁଅନ୍ତୁ ବିପଦେ ତ୍ରିଭୁ ଭୂମ୍ମ ସାଧା ।
ଭଦରଖବାସି, ଆଜି ଏକ କଥା
ପଡ଼େ ଏବେ ମନେ ଢାଏ ମର୍ମବ୍ୟଥା ।

ଯେତେ କାଳ ମୋର ଥିବ ଭବେ ଆୟୁ,
ବହୁଥିବ ଯେତେଦିନ ପ୍ରାଣବାୟୁ;
ଥାଏଁ ପଛେ ଯହିଁ ଦୂରେ ବା ନିକଟେ,
ରହିବ ସେ ଦୁଃଖ-ଦାଗ ଚିତ୍ତପଟେ ।

ଦୁଃଖିନୀ ଜନନୀ କରୁଣ କୁହାଟ
ଲାଗେ ଯେଉଁ ଭେଦ ଶୈଳ ବନ ଘାଟ,
ସାଗରୀ ସଲିଳେ ପ୍ରତିଧ୍ୱନି ତାନେ
କରୁଣ ନିନାଦ ବାଜଇ ମୋ କାନେ ।

ଉତ୍କଳ ଜନନୀ ଚିର ପ୍ରତିବେଶୀ
ଜନନୀ ଦୁଃଖ କି ଜାଣିବ ବିଶେଷେ ।
ଜାଣିଛ, ଶୁଣିଛ ସବୁ ବଜ୍ରପାତ,
ପଡ଼େ ଶିରେ ଯେପଦେ ସହୁଛ ଆଘାତ ।

ହାସିଛ ଜନନୀ ପ୍ରଜା ପ୍ରତି ସଦା
ରଖିଥିବ ଭାଇ ସ୍ନେହାଦର-ଶରଧା ।
ଜନନୀ ପିଲାଙ୍କୁ ନାହିଁ ଅନ୍ତରଖ,
ଥାନ୍ତା ଯେବେ ମୋର ବିହଙ୍ଗମ ପକ୍ଷ,

ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ
ଜନନୀ ପ୍ରଜାଙ୍କୁ କେଉଁ ଭଙ୍ଗା ଘରେ ।
ଆଉଁସି ପିଠିର ପ୍ରହାର-ରେଖ
ହରି ପାଇଥାନ୍ତି ପରାଣେ ଆଶ୍ୱାସ ।

ପତରପୁରର ସତ ସନ୍ନିଧାନେ
ମଲେ ହୁଜା ଦେଖ ଯହିଁ ଅଗ୍ନିବାଣେ;
ନସ୍ୱଦ ନର୍ଦୋଷ ଦେବ ଶୋଣିତ
କରିଛି ଜନକାଭୂମି ଯହିଁ ସିକ୍ତ,
ସେ ଶୁଦ୍ଧ ମୃତ୍ତିକା ଲଗାଇ ମୁଁ ଶିରେ,
ଦେଖ ଦେଶମାର ସରୋବର ତୀରେ,
ଲଭିଥାନ୍ତି ଥରେ ଅନ୍ତରେ ସାନ୍ତ୍ୱନା,
ଅପୂର୍ଣ୍ଣ ରହିଲା ଆହା ଏ ବାସନା !
ଲୋଡ଼ିଥିଲେ କେତେ ଥର ମୋ ଆଗମ,
ଆସି ନ ପାରିଲି କେବେ ମୁଁ ଅଧମ ।
ଯାଇଥିଲି ଥରେ ସଜ ଆମନ୍ତ୍ରଣେ,
ମରୁଥିଲେ ଲୋକେ ଯେବେ ଅନଶନେ ।

ଅସିଥିଲେ ଯଥାକାଳେ ଆଉ ବାରେ
ପଡ଼ ନ ଥାନ୍ତେ ବା ପ୍ରଜା ଅତ୍ୟାସ୍ତରେ ।
ରହିଛି ମନେ ଏ ଟିର ଅବଶୋଷ,
ବଡା ଦେଉଥାନ୍ତି ମାଗି ନିଜ ଦୋଷ ।
ଏବେ ଯେ କନକା, ଆସିଛି ମୁଁ ଭଡ଼,
କି ଦାରୁଣ ଦୃଶ୍ୟ ! ଯାଏ ଫେଟା ବୁଢ଼ ।
ସମୁଦ୍ର ପ୍ରାପ୍ତେ ଝଡ଼ର ସଭଥାଇ,
ବୁଲନ୍ତୁ ଚୌଦିଗେ ଗ୍ରାମ ହାଟ ବାଟ ।

ଲୁଟନ୍ତି ପରଜା ଘର ବାଡ଼ିରେ,
ମାରନ୍ତି ଗୁଣ୍ଡା ଯାହାକୁ ବା ଦେଖି;
କୁଳାଙ୍ଗନା ପରେ ଘୋର ଆକ୍ରମଣ
ଝଲକେ ବଧିର କରଇ ରୋଦନ ।

କଟକର ରାଜଧାନୀ ଚଉପାଶେ
ପ୍ରେତ ଆତ୍ମା ଯେବେ ଉଡ଼ଇ ଆକାଶେ ।
ଧନ୍ ଧନ୍ ରକ୍ତ ପଙ୍କ ଚହୁଁ ତଳେ,
ସେ ରକ୍ତ ଭୀଷଣ ଅଗ୍ନିଶିଖା ଜଳେ ।
ସିଞ୍ଚି ସିଞ୍ଚି ଶୁଷ୍କ ଗଙ୍ଗାନଦୀ ଜଳ,
ନ ଲିଭେ ପ୍ରବଳ ଜଳେ ସେ ଅନଳ

ଶୁଭେ ଚଉଦିଗେ କାତର ଚିତ୍କାର;
ପଳାଏ ପରଜା ଛାଡ଼ି ଘରଦ୍ୱାର ।
ପଥେ ଭୈରବୀର ଭୟେ ଗର୍ଭସ୍ରାବ,
ଉଠଇ ମୋ ଗାତ୍ରୁ ଧକଟାକ ରବ ।
ମହା ବଦେଁଯଧ୍, ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ କମଳା ।
ବହେ ଅଶେଷ ଝଡ଼ ଝଞ୍ଜା ବାତ ।
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ ।
ଏ କି ମୋ କଳ୍ପନା-ସତ୍ୟ ନା ସ୍ୱପନ ?
ବାଜେ ରେଳଘଣ୍ଟି, ଆସିଲା ଚେତନ ।

ଆଜ ଏକ ଘଣ୍ଟି ଗୁଡ଼ଦେବ ରେଳ,
ଭଦରଖେ ପୂର ଆସିଲ୍ଲ ମୋ ବେଳ ।
ଥାଅ ଗୋ ସାଳଧ ! ଥ ଅ ଭଦରଖ,
ଦୁଃଖିମା କଳକାଠାରେ ସ୍ନେହ ରଖ ।
ଥାଅ ଗୋ କଳକା ! ଭୋଗି ଭାଗ୍ୟ-ଲେଖା,
ବଞ୍ଚିଥିଲେ ପୁଣି ହେବ କେବେ ଦେଖା ।
ନ ଛେକ ସାହସ ନବଣ ନ ହୁଅ,
କହିଛି ନସ୍ତ୍ରନୁ ଚୋର ବହୁ ଲୁହ ।
ତୋର ଶତ ଶତ ନଷ୍ଟାଦ ସନ୍ତାନ,
ସହିଛନ୍ତ କାରକ୍ଲେଶ ଅପମାନ ।
ସହି ଏତେ କଷ୍ଟ ମନେ ନାହିଁ ଦ୍ବେଷ,
ନାହିଁ ହୃଦେ ହିଂସା ରୋଷ ସମାବେଶ ।
ମଲେ କନ୍ତୁ ହାତ ନାହାନ୍ତ ଉଠାଇ,
କର୍ମ କରୁଛନ୍ତ ଧର୍ମ ଅନୁଯାୟୀ ।
ଭୋଗିଛୁ ଚରଣେ ପୀଡ଼ା ଆପେ ଷଣ୍ଢ,
ଜାଗିଅଛନ୍ତି କନ୍ତୁ ପରଜା ଟକତ ।
ହେଉ ମ ନ୍ତ ହେବ ଆଜ ଯେ ଯାତନା,
ସତ୍ୟେ ନଳ କର ସତ୍ୟର ସାଧନା
ସତ୍ୟେ ମାନବର ସଭ୍ୟ ପରକାଶେ
ଭୀମ ଦାନବଙ୍କୁ ନାଶେ ସତ୍ୟ ପାଶେ ।

ଭୋଗି ଯେତେବ ପ୍ରଜା ଘୋର ଅତ୍ୟାଚାର,
ଆତୁରେ କରଇ କରୁଣ ଚିତ୍କାର,
ଝରଇ ଗଡ଼ାଏ ନୟନୁ ଲୋତକ,
ହୁଏ ଭୟେ ତାର ଗ୍ରନ୍ଥି ଧକ ଧକ,
କରୁଣ ହୃଦୟୁ ବହେ ଦୀର୍ଘଶ୍ୱାସ,
ହେ କନକାବାସୀ ! ରଖ ଏ ବିଶ୍ୱାସ,
ସେ ଉଷ୍ଣ ନିଶ୍ୱାସ ଅଶ୍ରୁ ବିସର୍ଜନ,
ସେ ଦାରୁଣ ନାଦ ପ୍ରାଣ ପ୍ରକମ୍ପନ,
ନୁହେ ନିରର୍ଥକ, ନ ଯାଏ ବିଫଳ,
ହୁଏ ସେ ଲୋତକେ ହିମାଚଳ ଜଳ ।
ସେ ନାଦେ କମ୍ପଇ ସ୍ୱର୍ଗ ସିଂହାସନ,
ଶୀତଳ ସେ ଉଷ୍ଣ ଶ୍ୱାସେ ହୁତାଶନ ।
ସେ ପ୍ରାଣ ପ୍ରକମ୍ପେ କମ୍ପେ ବସୁମତୀ;
ଡାକେ ପ୍ରକୃତିର ଏ ଭୀମ ଶକତି ।
ପ୍ରପୀଡ଼ିତ ପ୍ରଜା ହୃଦୟ ନିଃସାର,
ମନ୍ତ୍ରେ ସାବଧାନେ କାଳ ବଳପ୍ରାଣ ।
ଅଲକ୍ଷିତେ କରେ ଶକ୍ତି ଆୟୋଜନ,
ନ ଦେଖଇ ଯାହା ଅତ୍ୟାଚାରୀ ଜନ;
ଆସେ ଯେବେ ବେଳ, ଫଳେ କର୍ମଫଳ,
ସହସା ସେ ବଳେ କମ୍ପେ ଜଳ ସ୍ଥଳ !

ଦୁଃଖିତ ଜନକୁ ନ ଦୁଅ ଆତୁର,
ତେଜ ନିର୍ଯ୍ୟାତନ ଧନଦ୍ରବ୍ୟ ଜୁର ।
ଧର୍ମପକ୍ଷେ ଜୟ ସଦା ସୁନିଶ୍ଚୟ,
ରଖ ହୃଦୟରେ ଏ ଦୃଢ଼ ପ୍ରତ୍ୟୟ ।
ସାନ୍ତ୍ୱ ଆସିଅଛୁ ତୋର ଦୁଃଖ-ରାତ୍ର,
ରଖ ନିଜ ଆଶା ଦମ୍ଭ କର ଶାନ୍ତ ।
ନିଜ ଅଧିକାର ବୁଝି ଗ୍ଳାନି ଭୟ,
ଧୈର୍ଯ୍ୟ ଧର, ହେବ ନ୍ୟାୟସୁଖ ଜୟ ।
ପାଇବେ ତୋ ପୁଏ ନ୍ୟାୟ ଅଧିକାର,
ଘୁଞ୍ଚିବ ଜଗତୁ ତର ଅତ୍ୟାଚାର ।
ତୋ ଆଦର୍ଶ ହେଉ ଉଜ୍ଜ୍ୱଳ ଅକ୍ଷୟ,
ଜାଗୁ ପ୍ରଜାକୁଳ ତ୍ୟଜି ରାଜଭୟ ।
ମୋ ଶୁଦ୍ଧ କାମନା, ସ୍ପନ୍ଦ ନେତ୍ରଜଳ
ଦେବ, ଏଥି ମୋର ଏତିକି ସମ୍ବଳ ।
ଆଜି ମା ମାନବୀ ଲକ୍ଷ-ନିବାରିଣୀ
ଜୟ ବିଧାତାଙ୍କ ମଙ୍ଗଳକାରିଣୀ !
କରେ ନେ ଦୃଢ଼ ଚଳନେ ପ୍ରଶାନ୍ତ,
ଦିଅ ମୋ ହୃଦୟେ ସାହସ ଶାନ୍ତ ।
ମୋ ସାଧନା ସ୍ୱପ୍ନ ପୀଠ ହେଉ ଜାଗ,
ମୋ ପ୍ରାଣ ଜେଷ୍ଠା କର ରହିଁ ତାସ ।

ଜୟ ମା କରୁଣା ଉଦରଖ ପ୍ରଭା,
ଉଦରଖବାସୀ ତୋ ଶିଶୁ ସନ୍ତାନ ।
ତୁଅଛୁ ବଳିଷ୍ଠ କର୍ମଠ ସାହସୀ,
ଗଲେ ଯାଉ ପ୍ରାଣ ବାଜୁ ବୁକେ ଅସି ।
ନ ଫେରନ୍ତୁ କେବେ ପଛକୁ କାତରେ,
ସ୍ୱରାଜ୍ୟର ଶାନ୍ତ-ସଂଗ୍ରାମ ପ୍ରାନ୍ତରେ ।
କେତେ କ ଭାବନା ଜାଗେ ମୋ ଅନ୍ତରେ ।
ଜଣାଇବ କଥା ଏବେ ତବ ତରେ ।
ଥିଲେ ମୋର୍ ବଳ ଓଲ୍ହାଇ ଏ କ୍ଷଣେ
କହିଥାନ୍ତି ସବୁ ଶ୍ରୀପଦ ଦର୍ଶନେ ।
ମାତ ଜଗଦମ୍ବା କୁଳକୁଣ୍ଡଳିନୀ
ଅଗୋଚର ତୋର କବା ଗୋ ଭୁବନେ ।
ପ୍ରପୀଡ଼ନେ ପ୍ରଜା କରେ ହା ହା ନାଦ,
ମିଳ ନାହିଁ କ ମା ତୋତେ ଏ ସମ୍ବାଦ ?
ଉନ୍ମୁକ୍ତ ପବନେ ଉନ୍ମୁକ୍ତ ଅମ୍ବରେ
ସ୍ୱଚ୍ଛନ୍ଦ ଗଗନେ ବିହଙ୍ଗ ସଞ୍ଚରେ ।
ବନେ କରେ ପଶୁ ସ୍ୱଚ୍ଛନ୍ଦେ ବିହାର,
ନିର୍ଭୀକ ସେ, ନୁହେ ଅଧୀନ କାହାର ।
ଜଳି ତରଙ୍ଗିଣୀ ମତ୍ସ୍ୟ ଜଳଚର
ଖେଳନ୍ତି ସଲିଳେ ନ ଜାଣନ୍ତି ଡ଼ର ।

ଭାରତେ କେବଳ ନର ତହିଁ ସ୍ଥାନ,
ନୁହେଁ ସେ ସ୍ୱଚ୍ଛନ୍ଦ, ନୁହେ ସେ ସ୍ୱାଧୀନ ।
ନାହିଁ ଭବତଳେ କାହିଁ ତାର ସ୍ଥାନ,
ସହନ୍ତ ତାଡ଼ନା ଘୋର ଅପମାନ ।
ନିଜ ବାସେ ହେଲେ ନାହିଁ ତାର ଶାନ୍ତି,
ଭୋଗଇ ଯନ୍ତ୍ରଣା କାହିଁ କେତେ ଭ୍ରାନ୍ତି ।
ଭାରତ-ସନ୍ତାନ ଘୃଣ୍ୟ ଉପେକ୍ଷିତ,
ହେଉଛି ଭାରତୀ ଶୃଙ୍ଖଳା ପିନ୍ଧିତ ।
ଭାରତ ବକ୍ଷେ ଅପର ବିଳାସୀ ।
ଭାରତ-ନିବାସୀ ଚିର ଉପବାସୀ ।
ନହୁଷ ଯଯାତି ଶିବି ମହାଯଶା
ଶାସିଲେ ଯେ ରାଜ୍ୟ ତାର ଏହି ଦଶା !
ରାମ ଯୁଧିଷ୍ଠିର ଯାର ନରପତି,
ସେ ପ୍ରଜାକୁଳର ଆଜ ଏ ଦୁର୍ଗତି !
ସମଦର୍ଶୀ ଗୁଣେ ଯହିଁ ଆକବର,
ତୋଷିଲେ ସକଳ ପରଜା-ଅନ୍ତର,
ସେ ରାଜ୍ୟର ପ୍ରଜା କେତେ କାଳ ଆଉ,
ଭୋଗିବେ ଉତ୍କଟ ରାଜନୀତି ଦାଉ !
ଯେତେ ଦେବାଦେବୀ ଅଛନ୍ତି ଉତ୍କଳେ,
ଯାଆନ୍ତୁ ପର ସେ ସବେ ନୀଳାଚଳେ ?

## ବନ୍ଦୀର ଆତ୍ମକଥା

ବସେ ପର ତହିଁ ଦେବଯକ୍ଷ ନିତି,
ପଡ଼େ ନାହିଁ କି ଏ ରାଜ୍ୟ ଉଥ ଦୃଷ୍ଟି ?
ପ୍ରଜା ଭୋଗେ ଯେତେ ଦୁଃଖ ଦୁରବସ୍ଥର ।
ସେସବୁ ତହିଁ କି ନ ହୁଏ ଗୋଚର ?
ନ ହେଲେ ମା ଥରେ ପ୍ରଭୁଙ୍କ ନିକଟେ,
ଏ ଦୁଃଖ ଗୁହାରି କରିବୁ ଆକଟେ ।
ବିସ୍ତାରି କହିବୁ ସବୁ କଥା ଟାଣେ;
ଶୁଣିବେ ଯେପରି ସବ୍ୟ ଅବଧାନେ ।
କରୁଣା କଟାକ୍ଷେ ଚାହାନ୍ତୁ ସେ ବାରେ,
ବାଜିବ ସ୍ୱରାଜ୍ୟ-ଶଙ୍ଖ ସିଂହଦ୍ୱାରେ
ଉଡ଼ିବ ଅମ୍ବରେ ସ୍ୱରାଜ୍ୟ-କେତନ
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ-ଶାସନ ।
ଦେବପ୍ରତିଷ୍ଠିତ ମହର୍ଷି ସମ୍ମତ
ଜାଣିବ ଭାରତ, ଦେଖିବ ଜଗତ ।
ସ୍ୱରାଜର ଅଙ୍ଗ ଏକତା ସମତା,
ଶାନ୍ତି ଉଦାରତେ ସ୍ୱର୍ଗେ ଦେବତା ।୧୯୩।



# ଧର୍ମପଦ

( ୧ )

ବାର ବରଷର ବାଳୁତ ପୁଅ ସେ
ବୁଦ୍ଧିମନ୍ତ ସୁକୁମାର,
ଦେଖି ନାହିଁ କବା ଶୁଣି ନାହିଁ କେବେ
କଏ ସେ ବାପା ତାହାର ।

ଜନମ କୋଳରେ ବଢ଼ିଛି ଖେଳରେ
ଆଜନମୁଁ ଅତି ସୁଖେ,
ମଅ ବୋଲି କେବେ ମାଆଙ୍କ ବୋଲିବା
ଆଣି ନାହିଁ ହେଲ ମୁଖେ ।

ସ୍ୱାମୀଙ୍କ ବିରହ ଭୁଲିଛନ୍ତି ମାତା
ପୁଅ ବଦନ ଅନାଇଁ,
ଦେହରେ ଟିକିଏ ଚଢ଼ିଗଲେ ଧୂଳି
ସହି ନ ପାରନ୍ତି ସହିଁ ।

ଶଇଶବ କାଳୁ କୁଳ କାରଗଣ,
ଶିଖାନ୍ତି ଅତି ଯତନେ,
ଯାହା ଦେଖେ ଶୁଣେ ଶ୍ରୀଧର ଘର
ସବୁ ସେ ରଖଇ ମନେ ।

ଶିଶୁଗଣ ଯେବେ ଦାଣ୍ଡ ଧୂଳି ଖେଳେ
କରେ କେତେ ନବ ସୃଷ୍ଟି,
ତୋଳଇ ଦେଉଳ ଗଢ଼ଇ ଅଟ୍ଟାଳି
ଧନ୍ୟ ବିଚକ୍ଷଣ ଦୃଷ୍ଟି ।

ଦେଖି କାରିଗରି ତା କଳା ଚାତୁରି
ଆଶ୍ଚର୍ଯ୍ୟ ମଣନ୍ତି ଜନେ;
କହନ୍ତି, "ଆୟୁଷ ଥିଲେ ଏ ପିଲାଟି
ହେବ କେତେ ଲୋକେ ଜଣେ ।"

ପଚାରଇ ପୁଅ ଯେବେ ଶିଳ୍ପତତ୍ତ୍ୱ
କହନ୍ତି ମାତା ଉତ୍ତରେ;
"ପଢ଼ିଲେ ଜାଣିବୁ; ସବୁ ଆରେ ଧନ
ପୋଥି ଅଛି ଆମ ଘରେ ।"

ପାଞ୍ଚ ବର୍ଷ ବେଳେ ଗ୍ରାମ ଚାଟଶାଳେ
ଓଝା ଛୁଆଁଇଲେ ଖଡ଼ି,
ଚାହୁଁ ଚାହୁଁ ପୁଅ ଅଳପ ଦିନରେ
ଗଲା ସବୁ ପାଠ ପଢ଼ି ।

ଗୀତା, ଭାଗବତ ପୁରାଣ ଚରିତ
ହୋଇଗଲା ଅଭ୍ୟାସ ତାର,
ଦେବାଳୟ ତୋଳା ପୁଷ୍କରିଣୀ ଖୋଳା
ହିସାବ ଯେତେ ପ୍ରକାର ।

ସଙ୍ଗ ଗୃହ କେତେ    ସତ୍ତ୍ୱ ନ ପାରନ୍ତି
ଆନେ କରନ୍ତି ଆଦର,
ସମସ୍ତଙ୍କଠାରେ    ସମ ସ୍ନେହ ଭାବ
ନାହିଁ କେଉଁ ପରାପର ।

ବୃନ୍ଦାଳୀରୁ ଆସି    ଘରେ ଶିଳ୍ପଶାସ୍ତ୍ର
ପଢ଼େ କଣ୍ଠ ଏକ ଲପ୍,
କାଠ ପାଷାଣରେ    ଗଢ଼ଇ ମୂରତି
କେତେ ରଥ, ଦେବାଳୟ ।

ଦିନେ ବୃନ୍ଦାଳୀରୁ    ଫେରି ଆସି ପୁଅ
ଜଣାଇଲ ମାତା ପାଶେ;
ଆଖି ଥନଥନ,    ବଦନ ମଳିନ
କଣ୍ଠରେ କଥା ନ ଆସେ ।

ପୁଅକୁ ଅନାଇ    ମାତା ଅତି ଛନ୍ଦେ
ପଚାରନ୍ତି କେତେ ଦୁଃଖେ,
"କପାଳି ରେ ଧନ,    ହରସ ତୋ' ମନ
ହସ ନାହିଁ କପାଁ ମୁଖେ ?

ବୃନ୍ଦାଳୀରୁ ଫେରି    ଆନ ଦିନ କହୁ
ହରଷରେ କେତେ କଥା,
ଆଜ ତୋ ଏ ଗତି    ଦେଖି ମୋର ଛାତି
ଲାଗଇ ପରଶେ ବଥା ।

ଦେଖାଇଛନ୍ତି ଦଣ୍ଡ ଅବଧାନେ ଅବା
ଗାଳିଦେଲେ ଆଜ ସ୍ୱଟେ,
ସ୍ନାନମାନ କର କଏ କ ଭକ୍ଷଲ
କବା ଦାନ୍ତେ ବାଟେ ଘାଟେ ?

ଫେଡ଼ି କହ ବାବୁ, ଘଟିଛି ଯା ସବୁ
ତୁଟୁ ମୋ ମନୁଁ ସନ୍ଦେହ,
ମୁଁ ତ ଜାଣେ ତୋର ଗୁଣ ଆଚରଣେ
ସମସ୍ତେ କରନ୍ତି ସ୍ନେହ ।

କାନ୍ଦ କାନ୍ଦ ହୋଇ କପାଇଁ ରେ ବାଇ,
କଥା ନ ଆଣୁଛୁ ମୁଖେ ?
ନ ଜାଣୁ କି ବାବୁ ତୋ'ଏ ଭାବ ଦେଖି
ବଜ୍ର ପଡ଼ଇ ମୋ ବୁକେ !

ଲକ୍ଷେ ଦେବଦେବୀ- ପାଦ ସେବି ସେବି
ପାଇଛୁ ରେ ତତେ ଧନ,
କେତେ ମରି ମରି ରକ୍ଷୁଣୀ ହଙ୍କାଳି
ତୁ ମୋର ଜୀବ-ଜୀବନ ।

ତତେ ଦୃଷ୍ଟି ସିନା ଜାଉଛି ମୁଁ ଦିନ
ଏକାକିନୀ ଏତେ କାଳ,
କହ ମନକଥା ମୋ କୁଳ-ଚନ୍ଦ୍ରମା
ଭିକାରୁଣୀ-ଗଳାମାଳ !”

ମାତା ଆଶ୍ୱାସନା    ପାଇ ପଚେ ପୁଅ
ତେଜଣ ମନୁଁ ସନ୍ତାପ,
“କହ ମା, ସତେ କି    ଅଛୁ ଆମ ଭୂଜ;
କହ କିଏ ସେ ମୋ ବାପ ?”

କହନ୍ତି ଜନନୀ,    “କେବେ ତ ଏ କଥା
ପଚାରି ନ ଥିଲୁ ଥରେ,
ଚଟଶାଳୀରୁ ଆସି    କିପାଁ ବାବୁ, ଆଜ
ପଚାରୁ ଏତେ କାତରେ ?”

କହେ ପୁଅ, “ଆଜ    ଚଟଶାଳୀରେ ଚଟେ
କହିଲେ ମତେ ଯେ କଥା,
ଲାଜ ଅପମାନେ    ତଳେ ମୁହଁ ସଡ଼ି
ଟେକି ନ ପାରିଲି ମଥା ।

ଚଟଶାଳୀରେ ଯେବେ    ଲେଖୁଥିଲି ପାଠ
ଗୋଟାଳି ମୋ ଗଳ ଚଢ଼,
ନିକଟ ପିଲାକୁ    କହିଲି ହେ ଭାଇ,
କଡ଼ାଇ ଦିଅ ସେ ଖଡ଼ି ।

ମୋ କଥାରେ ସେ ତ    ଦେଲା ନାହିଁ ଖଡ଼ି
କହି କଲା ଉପହାସ,
'ଭାଇ ଡାକି ଆଣ—    ଦିଏ ଅବାରୁଆ
ଏହାର କେତେ ସାହସ !”

ନ କହୁଣ କହୁ          ଅଳପେ ହସିଲେ
ଚହିଁ ଆନ ପିଲାମାନେ,
ଲଜେ ପୋତ ମଥା          ଟେ ଟାଳ ଉଠାଇ
ଆସି ବସିଲି ମୋ ଥାନେ ।

ନ କର ସଙ୍କୋଚ          ଫେଡ଼ ସତ କଥ
ଛୁଇଁକର ଏ ମୋ ଦେହ,
ଆମ କୁଳ କଥା;          କାହାନ୍ତି ମୋ ପିତା,
ଯାଉ ମୋ ଭ୍ରମ ସନ୍ଦେହ ।”

କୋପେ ଜରଜର          ଜନମା ଧଇଲ
ଭାଷନ୍ତି ଉଚେ ବଚନ,
“କଏ ସେତୁ ପିଲା          ଦେଲା ଏତ୍ପରି
ଅପମାନ ଅକାରଣ ।

ତା ମା’ ଏଡ଼େ ସତୀ,          ମୋ ପୁଅକୁ ପୁଣି
କହେ ସେ ଅଣବାପୁଅ
ତା କଥାରେ ଛଳ          କର କବା ଫଳ
ସେ ବ ତ ଅଜ୍ଞାନ ଛୁଆ ।

ବୁଢ଼ା ବୁଢ଼ୀମାନେ          କହୁଥାନ୍ତି ଯାହା
ଶୁଣିଛି ।ମୁଁ ପିଲାବେଳେ,
ପରବ ପୁରୁଷ          ଯଣ ପଣ୍ଡରୁଷ
ବୁଝ ବାବୁ, ଏଥୁଁ ହେଲେ ।

ସୃଷ୍ଟି ଆଦ୍ୟକାଳୁ ଶଙ୍ଖକ୍ଷେତ୍ର, ଭୂଇଁ
ଆମ ଜୁଳ ଉତ୍କଳ,
ଏ ଜୁଳର ବନ୍ଧ- ବକ୍ଷେ ରଖିଛନ୍ତି
କେତେ ଅକ୍ଷୟ ସ୍ମାରକ ।

ଇନ୍ଦ୍ରଦ୍ୟୁମ୍ନ ରଜା ତୋଳାଇଲେ ଯେବେ
ଶ୍ରୀକ୍ଷେତ୍ରେ ବଡ଼ ଦେଉଳ,
ଧନାଢ଼୍ୟ ନାନା ଦେଶୁ କାରିଗର
କରାଇଲେ ଆସେ ଠୁଳ ।

ପଲ୍ଲୀ ସକଳେ ଯୋଗ୍ୟ ଶିଳ୍ପୀ ବାଛି
ଲଗାଇଥିଲେ ସେ କାମେ,
-ତୋ ପୂର୍ବ ପୁରୁଷେ ଶିରେ ଦେଲେ ଶାଢ଼ୀ
ପୁଣ୍ୟନୀଳାଚଳ ଧାମେ ।

କେତେ କାଳ ଅନ୍ତେ ସେ ମନ୍ଦିର ଯେବେ
ସଂସ୍କାର କଲେ ଯଯାତି,
ତୋ ପୂର୍ବପୁରୁଷେ ସେତେବେଳେ ତହିଁ
ରଖିଥିଲେ ବଂଶ ଖ୍ୟାତି ।

ଶେଷେ ସେ ଦେଉଳ ତୋଳାଇଲେ ପୁଣି
ଶ୍ରୀ ଅନଙ୍ଗଭୀମ ଦେବ,
ଭକ୍ତଙ୍କ ଅକ୍ଷୟ କୀର୍ତ୍ତିସ୍ତମ୍ଭ ରୂପ
ଶୋଭେ ଯାହା ଆଜଯାଏ ।

ତୋ ପୂର୍ବପୁରୁଷ-　　କୃତି କାରଗଣ
　ରଚିଅଛନ୍ତି ତହିଁ ଜାଣ,
ଏଥିରୁ ରେ ବାବୁ,　　ବୁଝ ତୁ ଆପଣା
　ବଂଶଗରିମା ପ୍ରମାଣ ।

ଖଣ୍ଡଗିରି-ଦେହେ　　ରଚିଥିଲେ ଗୁମ୍ଫା
　ଏହି ବଂଶ-କାରିଗରେ,
ଯହିଁ ଖାରବେଳ-　　ଶାସନ ନିଦେଶ
　ଲେଖେ ଅମର ଅକ୍ଷରେ ।

ରାଣୀହଂସପୁରେ　　ଶେଷ ଜୀବନରେ
　ରାଣୀ ସଙ୍ଗେ ନରପତି,
ଯୋଗିଜନ ମେଳେ　　ରହିଲେ ନିର୍ଜନେ
　ତେଜି ରାଜ୍ୟ ହେଲେ ଯତି ।

ବୈତରଣୀ-କୂଳେ　　ଯଯାତିକେଶରୀ
　କଲେ ଯେବେ ମହାଯାଗ,
ସରଗୁଁ ଦେବତା　　ଆସିଥିଲେ ତହିଁ
　ନେବାଲାଗି ଯଜ୍ଞ ଭାଗ ।

ବନ ପରବତେ　　ବୈତରଣୀ ସ୍ରୋତେ
　ହେଲା ବେଦ ପ୍ରତିଧ୍ୱନି,
ଯଜ୍ଞ-ଅନଳରୁ　　ଉଠିଲା ବରତା
　ଉଜ୍ଜ୍ୱଳ ଯେବେ ଅବନୀ ।

ଗଢ଼ିଲେ ଯେ ଶିଳ୍ପୀ  ପୁଣ୍ୟ ସ୍ମୃତିସ୍ତମ୍ଭ
ସପ୍ତମାତୃକା ମୂରତି,
ନ କର ସଂଶୟ  ଜାଣ ଆପଣାକୁ
ତାଙ୍କର ବଂଶ-ସନ୍ତତି ।

ଏକାମ୍ର କାନନେ  ଲଲାଟେନ୍ଦୁ-କେଶରୀ
ଅନୁପମ ଦେବାଳୟ,
ନିର୍ମିଲେ ଯେ, ତାଙ୍କ  ରକ୍ତ ତୋ ଶରୀରେ
ତୁ ତାଙ୍କ କୁଳ-ତନୟ ।

ବାରବାଟୀ ଦୁର୍ଗ  ମରାମତି ଲାଗି
ସ୍କନ୍ଧରେ ଗଲେ କଟକ,
ଯଥାକାଳେ କାମ  ନ ସରିଲା ବୋଲି
ରହିଲେ ତର୍ଦ୍ଦି ଅଟକ ।

ବାହୁଡ଼ ନାହାନ୍ତି  ଘରକୁ ସେ ଆଉ
କଟକେ ତେଜିଲେ ପ୍ରାଣ,
ସେହି ଭାବନାରେ  ମଲେ ଶାଶୁ ମୋର
ଶୋକେ ହୋଇ ହତଜ୍ଞାନ ।

ସେଉଁ ଦିନୁ ତୋର  ବାପା ଯାଇଛନ୍ତି
ଘର ଛାଡ଼ି ପରବାସ ।
ମୋ ଦେହରୁ ବାବୁ,  ଶୁଖିଛି ରକତ
ନାହିଁ ମୋ ଜୀବନେ ଆଶ ।

ଦନେ ଗଲେ ମତେ          ସ୍ୱର ପଥ ଲଗେ
ମରୁଛୁ ମୁଁ ଘନ ଘନ,
ରହିଅଛୁ ପିତା          ତୋ ମୁହଁ ଅନାଇ
ତୁ ମୋ ନୟନ-ସନ୍ଧାନ ।

ଏତିକର କଥା          କହୁଁ କହୁଁ ମାତା
ଧୋଇଲେ ଅଶ୍ରୁ ବଦନ,
ତଳେ ମୁହଁ ଘୋଡ଼ି          ଝନପିଲେ ସଖି
ବନେ ଅଶ୍ରୁ ଅବିରଳ ।

"କିପାଇଁ କହ ମା,          କାନ୍ଦୁଛୁ କାତରେ
ଚକିତେ ପଚାରେ ପୁଅ,
ବସି ମାତା କୋଳେ          ବସନ ଅଞ୍ଚଳେ
ପୋଛେ ତାଙ୍କ ନେତ୍ର ଲୁହ ।

"କାହାନ୍ତି ମୋ ବାପ,          କେତେ ଦିନ ହେଲା
କି କାର୍ଯ୍ୟେ ଗଲେ ସେ କାହିଁ ?
କେତେ ଦୂର ପଥ          ଏଥୁଁ ସେ ଗଇଳ
ମୁଁ କି ନ ପାରିବ ଯାଇ ?

ନ ଆସେ କି ତହୁଁ          ବାରତା ଏଠାକୁ
ଅଛନ୍ତି କିତ ସେ ଭଲେ ?
ଯିବାର ଉପାୟ          କହ ମା, ତୁରିତେ
ବାର୍ତ୍ତା ଆଣିବ ମୁଁ ଚଳେ ।"

ପୁଅର ମୁଖର          କୋମଳ ବଚନେ
ମାତା ପାଇଲେ ଆଶ୍ୱାସ,
ଚିନ୍ତି ପୁତ୍ରମୁଖ          କହନ୍ତି ଅହ୍ଲାଦେ
ପକାଇ ଘନ ନିଃଶ୍ୱାସ ।

“ମହୋଏଁ ମୁଁ ନେ,          କା ଉକଳେ ଲୁହ
ପୋଛୁ ଥିଲ ମୋ ଧନ,
ଏହି ଭରସାରେ          ବାର ବର୍ଷ ହେଲା
ରହିଛି ଧରି ଜୀବନ ।

ବାର ବର୍ଷ ହେଲା          ଯାଇଛନ୍ତି ବାପ
ଦେଉଳ ଗଢ଼ିବା ପାଇଁ,
ଖୋଳାଉଛନ୍ତି ଯା          ନରସିଂହ ଦେବ
ଗଜପତି ନରସାଇଁ ।

ଚନ୍ଦ୍ରଭାଗା ତୀର୍ଥ          ସାଗର-କୂଳରେ
ଗଢ଼ା ହେଉଛି ଦେଉଳ;
ଭଣୁଛନ୍ତି ରଜା,          ‘କଳା କାରିଗରେ
ଗଢ଼ନ୍ତୁ ସେ ଦେବ ଅତୁଳ’ ।

ଶିବାଇ ଧାଁଡରା          ଘୁରଇ ପ୍ରଧାନ
ବିଶ୍ୱକର୍ମୀ-କୂଳ ରାଇ
ଖିଲ କାରିଗର          ବାନ୍ଧୁ ଲଗାଇଲେ
କାମେ ବାରଶ ବଢ଼ାଇ ।

ସେହି ଡାକସରେ  ଗଲେ ସେ ତୋ ପିତା
ବାହୁଡ଼ି ନାହାନ୍ତି ଘରେ;
ସେତେବେଳେ ତୁ ମୋ  ଗର୍ଭେ ଦୁଇ ମାସ,
ଜନ୍ମିଲୁ ଛ' ମାସ ପରେ ।

କହୁଥିଲେ ଲୋକେ,  'ହେବ ସେ ଦେଉଳ
ଧର୍ମଦେବତାଙ୍କ ରଥ,
ପୂର୍ବେ ଦୁର୍ଗ ରୂପ  ଉତ୍କଳର ପୁଣି
ଓଗାଳିବ ସିନ୍ଧୁ ପଥ ।'

ଧର୍ମଦେବତାଙ୍କ  ଦେଉଳରେ ବାପ
କରୁଛନ୍ତି ବୋଲି କାମ,
ସୁମରଣେ ତାଙ୍କ  ଶରଧାରେ ଦେଲି
'ଧର୍ମପଦ' ତୋର ନାମ ।

ଦେଖି ନାହିଁ ତୀର୍ଥ  ଶୁଣିଛୁ କେବଳ
'ସାତ ଥର ଯିବ ଗଙ୍ଗା,
ଥରେ କେହି ଯେବେ  ଯିବ ଚନ୍ଦ୍ରଭାଗା
ମୁହଁ ପଡ଼ିଯିବ ଭଙ୍ଗା '!

ଯିବା ଦିନୁଁ ବାପ  ବାର ବର୍ଷ ହେଲା
ପାଇ ନାହିଁ ମୁଁ ବାରତା,
ତାଙ୍କ ଲାଗି ନିତି  ପହ୍ଲାଇ ବସାଇ
ପୂଜଇ ଚନ୍ଦ୍ର-ଦେବତା ।

ଅଖଣ୍ଡଳ ଜାଳ          ଗ୍ରାମଦେବଙ୍କ
ପାଦେ ପଡ଼େ ଅନୁକ୍ଷଣ

ରଥବାର-ତଟ          ପାଲ ମୁଁ ଲଭିଛୁ
ଧର୍ମଦେବତାଙ୍କ ଶରଣ ।”

କହେ ପୁଅ ତହିଁ,          “ଯିବ ଚନ୍ଦ୍ରଭାଗା,
କରିବ ବାପାଙ୍କୁ ଦେଖା,

ଆଣିବ ତାଙ୍କର          କୁଶଳ ବାରତା
ତାଙ୍କ ନିଜ ହାତ ଲେଖା ।”

“ମୋ ନେତପିଲ୍ଲକ,          ଛାଡ଼ କ ରେ ତତେ
ପାରିବି ମୁଁ କ୍ଷଣେ ବଞ୍ଚି ?

ମୋ ଅନ୍ଧାର ଘରେ          ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଧୁର ମଣି ।

ଆହୁଲ ତୁ ମୋର          ଜୀବନ ବୋଇତେ
ଅନ୍ଧର ଆଶା ଲଉଡ଼ି;

ତୋ ବିନେ ନ ଚଳ          ଯିବ ସିନା ବାବୁ
ଶୋକ ସିନ୍ଧୁ ଜଳେ ବୁଡ଼ି ।”

କହେ ପୁଅ ପୁଣି          ଲଟାଇ ପାଦରେ
“ଯିବ ନିଶ୍ଚେ ବାପ ପାଶ,

ମନ ତୋଷେ ମା ଗୋ !          ଦିଅ ଅନୁମତି
ଫେରିବ ନ ପୁଛ ମାସ ।

ବାପ ସଙ୍ଗେ ତହିଁ ଦେଖିବ ସୁଯୋଗେ
ଜାତ୍ରୀଏ ଶତ ଶତ,
ଦେଖିବ କପର ଟଣ୍ଡା ହେଉଅଛି
ଧର୍ମଦେବତାଙ୍କ ରଥ ।

ଚନ୍ଦ୍ରଭାଗା ତୀର୍ଥେ ସ୍ନାନ କରି ସୁଖେ
ଦେଖିବ ସୂର୍ଯ୍ୟ-ଉଦୟ,
ଭର ନାହିଁ ଭୟ କହ ମା, ବାପାଙ୍କୁ
ଦେବ ମୁଁ କ ପରିଚୟ ?

କହନ୍ତ ମା, "ବାବୁ, ଯିବାଲାଗି ଯେବେ
କରିଅଛୁ ଦୃଢ଼ପଣ,
କହିଁ। ନବାରିବ, ନବାରଣେ ପିତା
ହେବ ତୋ ମନେ କ୍ଷଣ ।

ଦେଖି ବାପ ତୋତେ ହେବେ ହରଷିତ
ହୃଦେ ଭୁ ଯିବ ପରତେ,
ଦେଖିବୁ ଆବର ଓଡ଼ିଶା-ଶିଳ୍ପୀର
ଅଦ୍ଭୁତ କର୍ମ ଜଗତେ ।

ବୟସରେ ଊଣ ହେଲେ ହେଁ ବାଳୁତ
ବୁଦ୍ଧି ତୋର ସୁକୁମାର,
ବୁଝାଇ ବଣେଷେ କହିବ ମୁଁ କସ ?
କର ଯାହା ତୋ ବସ୍ୱର ।"

କହିଲେ ଅବର ବାପ ନାମ ଛାର
ଭୂମିରେ ସେ ଦେଇ ଲେଖି,
“ବାପ ପୁଅଙ୍କର ଦେବ ଚନ୍ଦ୍ରାଶଳି
ଦେବାମାତ୍ରେ ଦେଖାଦେଖି ।

ତୋ ରୂପ ଆକୃତି ପିତୃ ପ୍ରତିକୃତି
ଏକା ଗୁଣେ ଯେତେ ଊଣା,
ନେତ୍ରେ ନାସା ଆସ୍ୟ ଲଲାଟେ ପ୍ରକାଶ
ବାପ-ମୁଖ ଷୋଳକଳା ।

ନୟନେ ନୟନ ହେଲେ ଭେଟାଭେଟି
ହେବ ପରାଣ-ମିଳନ,
ସେ ଯାହାର ତାକୁ ଲୋଡ଼େ ସେ ସହଜେ
କରିବାକୁ ଆଲିଙ୍ଗନ ।

ତଥାପି ମ ବଳେ ମନ ଚଳେ ଏକା
ଗୁଡ଼ିବାକୁ ଏତେ ଦୂର,”
“ନ ଡର ଲୋ ବୋଉ ସଙ୍ଗେ ଯିବ ମୋର
ଘର ବଳିଆ କୁକୁର ।

ବଳିଆ ବାପାଙ୍କୁ ନ ଚିହ୍ନିଲେ ତାଙ୍କୁ
ବାପା ଚିହ୍ନିବେ ନିଶ୍ଚୟ,
ଗ୍ରାମ ନାମ ମୋର ଜନମ-ବୃତ୍ତାନ୍ତ
କହି ଦେବ ପରିଚୟ ।”

"ମର ଯାଏ ଆହା      ମୋ ଧନମାନଙ୍କ
କେତେ ବୁଦ୍ଧି କି ସାହସ ?
ଜଗନ୍ନାଥେ କୃପା-      କଲେ ତୁ ରଖିବୁ
କୁଳ-ଗଉରବ ଯଶ ।"

( ୨ )

ତ୍ରୟୋଦଶୀ ତିଥି      ଶୁଭ ବେଳ ଦେଖି
ସୁଅ ଜଳ ଅନୁକୂଳ,
ଜାଗୁଳାଇ ପୂଜି      କାନରେ ଜନନୀ
ବାନ୍ଧିଲେ ପ୍ରସାଦ ଫୁଲ ।

ସ୍ୱାମୀ ଲାଗି ପୁଣି      ବାଡ଼-ବରକୋଳି
ଦେଲେ ପାଉଁଳରେ ବାନ୍ଧି,
କହିଲେ, "ଏଥିରେ      ବାପାଙ୍କ ଶରଧା
ନେବୁ ସତନେ ସମ୍ଭାଳି ।

ବଳଆ ସଙ୍ଗତେ      ବାଉ-ବରକୋଳି
ଦେବ ଆନ ଘରେପୁ,
ଲକ୍ଷ୍ମୀ ନରସିଂହ      ଶ୍ରୀଦୁର୍ଗା ମାଧବ
ହୁଅନ୍ତୁ ତୋର ଆଶ୍ରୟ ।"

ଯାର ଧର୍ମରେ    ମାତା ଆଶୀର୍ବାଦ
ଯେମନ ହୋଇଲା ବାହାର,

ଯାଏ ପୂର୍ବ ମୁଖେ    ବଳଶ୍ର କୁକୁର
ସ୍ୱର୍ଗେ ପଛେ ପଛେ ତାର ।

ଅପନର ବାଟ    କେତେ ଦେଖାଅ
ବନ ସ୍ଥଳ ନଘ ସର,

ଗଲେ ଧର୍ମପଥ    ନ ଗଣି ପ୍ରମାଦ
ଦେବା ଜଣି ନରନ୍ତର ।

ଗୃଢ଼କଙ୍କ ପଛେ    ଗୋଡ଼ାଏ ଉତ୍ସାହେ
ବଳଆ ଧାଏଁ ତା ପଛେ

ଚନ୍ଦ୍ରଭାଗା-ଯାତ୍ରୀ    ଧର୍ମପଦ ବୋଲ
ଦେଖେ କାହିଁ ବାଟ ଘାଟେ ।

ପବିତ୍ର ପବର    ଚନ୍ଦ୍ରଭାଗା ସ୍ପର୍ଶ
ହେଲା ଯାଇଁ ପରବେଶ,

ଲାଗିଛନ୍ତି ଯନ୍ତ୍ରୀ    ବାରଣ ବଣ୍ଡାଇ
ଭକ୍ତମା ନାହିଁ ନମେଷ ।

ଦିନ ରାତି ଯନ୍ତ୍ରୀ    ଜଣା ନ ପଡ଼ଇ
ମୁଖରିତ ନିରନ୍ତର,

ଭୋଜନ ଶୟନ    ଛାଡ଼ି ଲାଗିଛନ୍ତି
ପ୍ରାଣପଣେ କାରିଗର ।

( ୩ )

ବାର ବରଷର ସରଳ ବାଳକ
ସେ ଅଚହ୍ନା ସ୍ଥାନେ ଏକା;
ଚଳନ୍ତେ ଚୌଦିଗେ ଅନାଇଁ ଚକିତ
ବାଟର ନ ପାଇ ଦେଖା ।

ଚିନ୍ତରେ, "କାହାକୁ ପଚ୍ଛିବ ଏଥି
କିଏ ବା ଦେବ ଉତ୍ତର,
ସର୍ବେ କର୍ମେ ରତ ଏକକୁ ଆରେକ
ଖୁଣ୍ଟିବାକୁ ନାହିଁ ତର ।"

ଅବସର ବୁଝି ଲୋକ ବସି ବ୍ୟାଜେ
ବୁଲେ ସେ ଜନ ଗହଳେ;
ଉଆସ ପୁଅଳ ସେ ନଗର ଫଳ
ଯେ ଦେଖେ ତା ମନ ଟଳେ ।

ଜଣେ ଜେଷ୍ଠ ଶିଳ୍ପୀ ଖର କଥା ଘାତ
ମରମେ ଆହତ ଅତି,
କହେ, "ମୋ କାଣ୍ଡରେ ପଡ଼ୁଥିବ ଆହା !
କେତେ ଲୋକ ଏକ ମତି ।"

ଯୋଗାନଢଳା ପିଲ୍ଲ- ମୁହିଁକୁ ଅନାଇଁ
କହୁ ନ ପାରଇ କଷ୍ଟ,
ନ ଜାଣେ ଅପୂର୍ବ ବାତ୍ସଲ୍ୟ-ମମତା
କପିଁ । ହୃଦେ ଉପୁଜଇ ।

ବାଳକ ବଚନ ଶୁଣି କୁକୁରକେ
ପୁଲକେ ପୂରେ ପରାଣ,
କୁକୁରକୁ ଦେଖି ଅନ୍ତର ଭଙ୍ଗିରେ
କରେ ସେ ସତ୍ୟ ପ୍ରମାଣ ।

ଗ୍ରାମ ନାମ ଆଦି ପଶ୍ନର ପାଇଲ
ହେତବ ପୂର୍ବ-ପରିଚୟ;
ବାଳକ-ବଦନ ଚୁମ୍ବିଲ ସ୍ନେହେରେ,
ଚରଣେ ନମେ ତନୟ ।

ବାପ ପୁଅ ବେନ ଗଲେ ବସାଙ୍କରେ
ପଚାଇଲେ କେତେ କଥା,
କହେ ଶିଲ୍ପୀ, "ବେଗେ ଯାଉଛୁ ଗାମକୁ
ନ ଗଲେ ନ ରହେ ମଥା ।"

"କପାଁ ଏ ଉଦ୍‌ବେଗ ?" ପାଇ ମନେ ଖେଦ
ପଶ୍ନରେ ଭାତରେ ପୁଅ,
ବୃଦ୍ଧ ଶିଲ୍ପୀ ମୁଖେ ବଚନ ନ ସ୍ଫୁରେ
ନୟନୁ ବହଇ ଲୁହ ।

କ୍ଷଣକ ଅନ୍ତରେ                 କହେ ବୃଦ୍ଧ ପ୍ରତି
"ଥିଲା ମୋ ପୂର୍ବ ସୁକୃତ,
ଅନ୍ତକାଳେ ତୋତେ                 ଦେଖି ଏଥୁ ବାବୁ
ହେଲି ଏବେ କୃତ୍ୟକୃତ୍ୟ ।

ବାର-ବର୍ଷ ହେଲା                 ଲାଗିଲାଣି କାମ
ମୁହା ନ ହେଲା ଦେଉଳ,
କାଳ-ଅନୁକ୍ରମେ                 ରାଜା ନରସିଂହ
ଦାରୁଣ ଦୁଃଖେ ଆକୁଳ ।

ଦୁଇ ଦିନ ମଧ୍ୟେ                 ପୂରିବ ଦେଉଳ
ନ ରହିବ କିଛି ଶେଷ,
'ନା ହେଲେ କାଟିବ                 ବଢ଼ାଇଙ୍କ ମୁଣ୍ଡ
ହୋଇଛି ରାଜା ଆଦେଶ ।

ଦୁଇ ଦିନୁଁ ବଳେ                 ହେଲାଣି ଅଧାର
ଆଜି କାଲି ଦିନ ବାକି,
ଭୟରେ କାତର                 ସର୍ବେ କାରିଗର
ନିଦକୁ ନ ପାଏ ଆଖି ।

ନଦୀ-ଗର୍ଭେ ହେଲା                 ଦେଉଳ ପତନ
ଭଙ୍ଗିଲା ତର୍କି ନ ଦୋଷ,
କେଜାଣି କାହାର                 ଅପରାଧେ ଅବା
ଗ୍ରହବଳ କଲେ ରୋଷ ।

ଜଳେ ଯେତେ ଯତ୍ନ ନ ପୂରେ ଦେଖିଲ
ନ ବସେ ଦନ୍ତ-ନକ୍ଷତ,

ଜୁପାପୁ ନ ଦେଖି କାଷ୍ଠଗରଙ୍କର
ହଜାଲଣି ବୁଦ୍ଧି ବୃତ୍ତି ।

ଗ୍ରମ୍ଫନ୍ତୁ ଆଦେଶ- ମନ୍ଦର ମୁକୁଟେ
ହେବ ଚୂର୍ଣ୍ଣ ଖଣ୍ଡିତ,

ସୁଭଙ୍କେ ଯାହାର ମହୋଦଧି-ବକ୍ଷେ
ନ ଯିବ ଶସ୍‌ ବୋଇତ ।

ବାରଣ ବଡ଼ାଇ ଏକୁଁ ଏକ ସବେ
ଶିଳ୍ପବିଦ୍ୟା ବଣାଉଦ,

ଗଢ଼ି ଛନ୍ତି କେତେ ଦେଖିଲ ଅଞ୍ଚଳ
ସେଥୁ ଦୁର୍ଗ ଜନପଦ ।

ଯେଙ୍ଗା ବୁଦ୍ଧି ବଳେ ଚକ୍ରାନ୍ତ ପଥର
ଖପି ସବୁ ପଡ଼େ ତଳେ,

ଦେଖିଲ ମୂଢତା ବୁଦ୍ଧି ନ ଧଣର
ନତମସ୍ତ ଏବେ ସକଳେ ।

ଆଜ ନଷ୍ଟି ଶେଷେ ଜାଲି ସୁଘଟରେ
ହୋଇବ ଭବ ଉଦୟ,

ଛବ ଧନ ଭବ ଛୁଞ୍ଚିଣ ଦେଖିବେ
ବାରଣ ବଳ୍ଲାଭ ଛଦ୍ୟ ।

ଆଜ ପଞ୍ଚଦେବଳେ କଣଦେ ବସୁଛି
ବସି ସବୁ କାରିଗର,
ଯାଉଛୁ ମୁଁ ତେବେ, ଏହିଠାରେ ଥିବୁ
କଷ୍ଟିଲେ ବିଶ୍ରାମ କର ।"

ବାପର ବିଷାଦ ଦେଖି ଧର୍ମପଦ
ଅଶ୍ରୁପୂର୍ଣ୍ଣ ଉଦ୍ଧତ ବାଣୀ—
"ସତେ ନରସିଂହ ମହାରାଜ ଦେବ
ବାରଣ କରିବେ ଜାଣି ?

ଉତ୍କଳର ଶିଳ୍ପି— କୁଳ-ସୁପ୍ରସିଦ୍ଧ
ଦକ୍ଷ କାରିଗରଗଣ,
ମିଳିଛନ୍ତି ସର୍ବେ, ସେ କାର୍ଯ୍ୟ କ'ଣ ତେବେ
ରହିବ ପାରେ ଅପୂରଣ ?

'କ ଥିଲେ ଆଚାର୍ଯ୍ୟ ଦାଦା ଅନୁମତି
ସଭାସ୍ଥଳେ ଯିବା ପାଇଁ ?
ଶିଳ୍ପ ଗୂଢ଼ ପ୍ରଶ୍ନ ଶୁଣିବି, ଦେଖିବି
ବାର ଶତ ଜାତି ଭାଇ ।"

ବାପ ପୁଅ ବେନି ତତକ୍ଷଣେ ଚଳି
ଚାଲିଗଲେ ସଭାସ୍ଥଳେ,
କଲେ ତର୍କ ଯୁକ୍ତି ଉକ୍ତି ପ୍ରତ୍ୟୁକ୍ତି
ଯେଝା ବୁଦ୍ଧି ବଳଗଲେ ।

ରଥ ଦେଉଳପୁ— ଗଠନ-ନୈପୁଣ୍ୟ
ଚମତ୍କାର ଉତ୍ଥାନ,
ବୃଦ୍ଧ ଶିଳ୍ପୀଗଣେ କଲେ ଆଲୋଚନା
ଦେଖାଇ ଶାସ୍ତ୍ର-ପ୍ରମାଣ ।

ଘୋର ଅଧ୍ୟାଏ ସୃଜନ କସ୍ମର
ନ ହେଲା କିଛି ମୀମାଂସା,
ଉପାୟ ନ ପାଇ କାରଣ କହାଇ
ଛାଡ଼ିଲେ ପରଣ ଆଶା ।

ଘୋର ଭକ୍ତ ବେଳ ସ୍ୱପନସୁ ବାଣୀ
ଭଦ୍ରେ ଶେଷେ ଧର୍ମପଦ—
ମାଳାରକ୍ଷେ ଯେବେ ସତ୍ୟ ଜଗନ୍ନାଥ,
ନ ହେବ କିଛି ଆପଦ ।

ଏକାନ୍ତ ଭାବରେ ସତ୍ୟେ ପ୍ରତିଷ୍ଠିତ
ଯେବେ ପ୍ରଭୁ ଲିଙ୍ଗରାଜ,
ନ ସହିବ କେବେ ନିନ୍ଦା ଅପଖ୍ୟାତି
ଉତ୍କଳ-ଶିଳ୍ପି-ସମାଜ ।

ଯାହାଙ୍କୁ ଯେବେ ସତ୍ୟ ବେଦମନ୍ତ୍ରେ
ଉଠିଥିବେ ସାରଭାଇ,
ମୁଣ୍ଡ କଟା ହୋଇ ନ ମରିବେ ଏହି
କେବେ କାରଣ କହାଇ ।

ମୁଁ ଅତି ସାମାନ୍ୟ   ଶିଶୁ ଅକିଞ୍ଚନ
ଜାତ ବିଶ୍ୱକର୍ମା-କୁଳେ,
ଶିଳ୍ପି-ସାମନ୍ତଙ୍କ   ହେବ ଯେବେ ଆଜ୍ଞା
ହାତ ଦେବି ଏ ଦେଉଳେ ।

ଜନକ ମଧ୍ୟରେ   ମୁଦିବି ଦେଉଳ
ମନେହୁଏ ମୋ ବିଶ୍ୱାସ,
ମାଗେଁ ଏ ଆଦେଶ   ଶିଳ୍ପି-ସାମନ୍ତଙ୍କ
ଚରଣେ ମୁଁ ଦୀନ ଦାସ ।"

ବାଳକ-ବଚନ   ଶୁଣି ସଭାଜନ
ବିସ୍ମିତ ହେଲେ ସକଳ,
କହିଲେ, "ଏ କଥା   ଅତି ଅସମ୍ଭବ
ଶିଶୁ-ସ୍ୱଭାବ ଚପଳ ।"

ଅଭିମାନୀ କେହି   କହନ୍ତି ଗରବେ,
"ଜଡ଼ିତ ଅଛି ମରଣ,
ଜନକରେ ଯେବେ   ଏକା ଏ ବାଳକ
କରେ ଦେଉଳ ପୂରଣ ।"

ଅନ୍ୟ ବୋଲେ, "ଗୁଢ଼   ଈର୍ଷା ଅହଙ୍କାର
ନାହିଁ ଏଥି ଅପମାନ,
ପୂରୁ ଦେବାଳୟ   ରହୁ ରାଜଦ୍ୱାରେ
ଶିଳ୍ପି କୁଳ-ସନମାନ ।"

“ଯୋପଟେ ଯଦ୍ୟପି ନ ହେବ ଏ କାର୍ଯ୍ୟ
ଲୋକରେ ପଡ଼ିବ ଜଣା,
କନ୍ଧା ହେବ ଶାନ୍ତି ଏ ବାଳକ ମୁଣ୍ଡ
ଆମ ମୁଣ୍ଡ ହେବ ଫଣା ।”

ଯପକ୍ଷେ ବିପକ୍ଷେ କଳ୍ପନେ ଏପରି
କେତେ କଥା କେତେ ଜଣ,
ଅବଶେଷେ ଜଣେ ବୃଦ୍ଧ ଶିଳ୍ପୀ ଭଣେ,
“ଶୁଣ ଭଲ ସଜ୍ଜନ ।

ଦେଲେ ହେଁ ବାଳକ ଶିଳ୍ପି କୁଳେ ଜାତ
ମୁଦର ପେଟେ ମଧର,
ରତ୍ନର ଝଟକେ ଶିଳ୍ପି-ଗହ୍ୱରେ
ଯାଉପଟ୍ଟେ ଆର୍ମ ଶିର ।

ପଣ୍ଡିତ୍ନ ଏହାର ଅସମ୍ଭବ ବୋଲ
ମନେ ଶଙ୍କର ନ କର,
କାହାକୁ କ ଶକ୍ତି ଦେଇଛନ୍ତି ପ୍ରଭୁ
ଜାଣିବ ତା କାହିଁ ନର ?

ତୁଏ ଶିଶୁମୁଖେ ସତ୍ୟ ପରକାଶ
ବାଳକେ ବଳ-ଉଦୟ,
ଅସମ୍ଭବ ତୁଏ, ସମ୍ଭବ ଜଗତେ
ଦୟା କଲେ ଦୟାମୟ ।

ଧ୍ରୁବ ପ୍ରହ୍ଲାଦ ପୁରାଣ-ପ୍ରବାଦ
କବି-କଳ୍ପନା ନ କହ,

କାଳେ କାଳେ ଶିଶୁ ଅସାଧ୍ୟ ସାଧିବ
ଦେଲେ ତୁମ୍ଭ ଅନୁଗ୍ରହ ।

ଶୁଣିଛ ତ ସବେ ଅଭିମନ୍ୟୁ କଥା
ବୀର-ବାଳକ-ବିକ୍ରମ,

ଶୁଣିଛ ଜନମୁଁ ଥିଲେ ଶୁକଦେବ
ବ୍ରହ୍ମଜ୍ଞାନୀ ଅନୁପମ ।

ଶିଶୁ ବଢ଼ି ଯବେ ହୁଏ ଯୁବା ବୃଦ୍ଧ
ଚତୁର ପ୍ରବୀଣ ନର,

ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର ।

ତାଙ୍କ ଧନ ରତ୍ନ ରହିଅଛି ବାଙ୍କ
ଦପ୍ତରରୁ ନାହିଁ ଭାଳ,

ଯାହା ଜଣବାର ସ୍ଥିର କରି ଏବେ
ଆଉ ଅଧିକ ନ ଭାଳ,

ଦଇବ ଇଚ୍ଛାରେ ଏ ବାଳକ ଏଥି
ଯଥାକାଳେ ଉପଗତ,

ଛାଡ଼ିଦେବା ଏହା ହାତେ ରାଜ୍ୟ କାର୍ଯ୍ୟ
କର ସବେ ଏକ ମତ ।"

ଏହ୍ଲପର ବନ୍ଧୁ  ବର୍ଷର ଶେଷରେ
ସ୍ଥିର କଲେ ଶିଳ୍ପିଗଣ,
କରନ୍ତୁ ବାଳକ  କାଲି ଅଛାସ୍ତରେ
ଆଗେ ମଦର ଗାଷଣ୍ଡ ।

କାଲି ସନ୍ଧ୍ୟା ଯାଏ  ଲଗିବା ସରବେ
କାମ ନ ହେଲେ ପୂରଣ,
ସମର୍ପି ଦେଇଲ  ବାର ଶତ ଶିର
ରାଜନେ ପିବା ଶରଣ ।

ବାଳକେ ସବରେ  ଭଣଲେ ଧନ୍ୟ ଧନ୍ୟ
ଗର୍ଜିଲ ସନ୍ତ୍ର ସେ ଦନ,
ବାରଣ ବଢ଼ାଇ  ଲାଗିଲେ କାମରେ
ନଗରେ ମୁଖ ମଳନ ।

( ୪ )

ଚର୍ଦ୍ଧି ଆରୋହନ  ଧର୍ମପଦ ବେଶେ
ଦେଖିଲ ଗଠନ ସାର,
ପରଖେ ପଡନ  ଚୀତ୍ର ଖମ୍ଭ ଭୋଣ
ଆଦ୍ୟ ପ୍ରାନ୍ତ ଅବସ୍ଥିତ ।

ବାରଣ ବଡ଼ାଇ                    ଲଗିଛନ୍ତି କାମେ
କର ପ୍ରାଣ ପ୍ରାୟଶ୍ଚିତ୍ତ,
ଶୁଣୁଁ ଶୁଣୁଁ ଦିନ                    ହେଲ ଅବସାନ
ରବି ହେଲେ ଅସ୍ତମିତ ।

ନ ସରିଲ କାମ                    ନ ଭରଇ ଆଶା
ରାତ୍ର ମଧ୍ୟେ ପୂରିବାର,
ବାରଣ ବଡ଼ାଇ                    ମୁଣ୍ଡେ ହାତ ଦେଇ
ବସିଲେ ଛେଳ ଆହାର ।

କହେ ଧର୍ମପଦ,                    "ଅଜ୍ଞା ହେଲେ ମତେ
ଜାଣେ ଦେବ ଏବେ ହାତ,
ପ୍ରଭୁ ଦୟା କଲେ                    ପୂରିବ ଦେଉଳ
ନ ହେଉଁ ରାତ୍ର ପ୍ରଭାତ ।"

ବାରଣ ବଡ଼ାଇ                    କଲେ ଧନ୍ୟ ଧନ୍ୟ
ଦେଲେ ସର୍ବେ ଆଶୀର୍ବାଦ,
"ଯାଅ ବାବୁ ଯାଅ                    ବିଳମ୍ବ ନ କର
କହି କଲେ ଜୟନାଦ ।

"ଉତ୍କଳମାନ                    ପ୍ରଭୁ ନରସିଂହ
ପୂରାଅ ମନ କାମନା,
କାଲି ସକଳର                    ବଢ଼ାଇ ଶୁଣିବ
ହେଉ ନାମର ଘୋଷଣା ।"

( ୫ )

ଆରମ୍ଭିଲ କାମ    ଦେଉଳ ଶିଖରେ
ଏକ ଲକ୍ଷ୍ୟେ ଧର୍ମପଦ,
ଆଶାର ଆନନ୍ଦ    ଭାବିଗଲ ଏଣେ
ଆଶଙ୍କା କଲେ ଆପଦ ।

କାଳର କରଣୀ    କଷ୍ଟେ ଯିବେ ଭାସି
ନରସିଂହ ଗଜପତି,
ଏ ବାଳକ ମୂର୍ତ୍ତେ    ରକ୍ଷା ହେବ ଜାତି
ଘଟିବ ଆମ ବିପତ୍ତି ।

ଯଥା ସମୟରେ    ପୂରିବ ଦେଉଳ
ଏହି ମାତ୍ର ଆଶ୍ୱାସନା,
ଚରଣ-ଉପରେ    ସବୁ କାରିଗରେ
କରନ୍ତି ନାନା ଭାବନା ।

ତଥି ଏକଠାଇଁ    କାରଣ କହାଇ
ଆତଙ୍କେ କାଟନ୍ତି ବସି,
ଏହି ସମୟରେ    ପୂରିଲା ଦେଉଳ
ଅଗ୍ର-କୁମ୍ଭ ଗଲା ବସି ।

ଦାରୁଣ-ଶିକ୍ଷାରେ    ବୁଝିଲେ ସକଳେ
ଚଢ଼େଣି ଦେଉଳ ଚୂଳେ,
ରହି ଥାଇଁ ଥାଇଁ    ଉତ୍ଥାନ ମିଳନ
ଧର୍ମପଦ ତାଙ୍କ ଭୁଲେ ।

( ୭ )

ଦେଖି କାରୁଗରେ କରନ୍ତି ପ୍ରଶଂସା
ନାହିଁ କାହା ମନେ ସୁଖ,

ପଚ୍ଚରେ ବାଳକ, “କପାଇଁ ଦଣ୍ଡେ
ଆପଣ ସର୍ବେ ବିମୁଖ ?

ଦର ବିକଶିତ କମଳ ସରସେ
କଟାଁ ତୁମ ବଜ୍ରାଘାତ ?

ଉଲ୍ଲସିତ ପ୍ରାଣେ କାହିଁ କି କାରଣେ
ଅକସ୍ମାତେ କଷାଘାତ ?”

ଜଣେ ବୃଦ୍ଧ ଶିଳ୍ପୀ କହନ୍ତି ନିରୋପି
ସମସ୍ତଙ୍କ ମନ କଥା—

“ଓଡ଼ଲ ଦେଉଳ, ଦେବ ତୁମ ପଣ
ନ ରହିବ ଆମ ମଥା ।”

ନ ଶୁଣୁ ଅଧିକ କହଇ ବାଳକ
“ମୋର ସେ ପତନ କି ଫଳ ?

ଯେବେ ଶିଳ୍ପିକୁଳ ବାର ଶତ ଫୁଲ
ଝାଉଁଳି ପଡ଼ିବେ ତଳ ।

ମୁଁ ଶିଳ୍ପି କୁଳର ଅଧମ ତନୟ
ଜାତିଭାଇଙ୍କ କିଙ୍କର,

ଦେଉଳ ପୂରଣେ ନାହିଁ ମୋ କରଣୀ
ସେ ସବୁ କାର୍ଯ୍ୟ ତୁମ୍ଭର ।

ଜାତି ଭାଇଙ୍କର ଆଦେଶେ ପିନା ମୁଁ
କଲି କାର୍ଯ୍ୟ ସମ୍ପାଦନ,

ଜାତିପୁଅଙ୍କର ମୁଣ୍ଡ ଗଲେ, ମୋର
ଜୀବନେ କି ପ୍ରୟୋଜନ ?

କାରଣ ବଢ଼ାଇ ମୋର ଜାତିଭାଇ
ଜାଣ ଏ କଥା ନିଶ୍ଚୟ,

ଯାହା ହେବ ହେବ କେବେ ନ ଘଟିବ
ତୁମ୍ଭ ଜୀବନ ସଂଶୟ

କେହି ନ ଜାଣନ୍ତୁ ମୋ ନାମ ଏଠାରେ
ନ ଜାଣିବେ କେହି ତାହା,

ନ ହେଉଁ ଆଜି ଏ ରଜନୀ ପ୍ରଭାତେ
ଦେଖିବ ମୁଁ ନିଜ ସ୍ପୃହା ।

ଶତକେ ଦେଉଳ ପୂରିଲା ଯେପରି
ନ ହେବ ଲୋକେ ପ୍ରକଟ,

ନ ଜାଣିଲେ ରଜା କି ଅବା ପ୍ରଧାନ
ଘଟିବ କାହିଁ ସଙ୍କଟ ?

ପଦ୍ମରେ ମାତର  ଅଛୁ ଆଜ ରଙ୍ଗ
ଯାଅ ବାଟେ ଶୁଭ କ୍ଷଣେ,

ଝୁଙ୍କୁଛୁ ସଦାୟ  ଦଣ୍ଡବତ କର
ତଥାଗତଙ୍କ ଚରଣେ ।”

( ୭ )

ସେ ଯାହା କୁଟୀରେ  ଗଲେ କାରଣରେ
ବାପ ସଙ୍ଗେ ଧର୍ମପଦ,

କହେ ପୁଅ, ଏବେ  ପୁଚ୍ଛିବ କଥାଏ
"ମନେ ନ ଗଣ ଆପଦ ।

ଜୀବନ କୁଞ୍ଜରେ  ଦୁଃଖରେ ଦାୟ ନ
ବାରଣ କଢ଼ାଇ ଦାୟ,

ଏ ଜନ୍ମରେ ଦେହ  ବାରଣ କଢ଼ାଇ—
ଷାଣ ଉଦ୍ଧାର-ଉପାୟ ।’

ବାପ ମନେ ଗଲେ  କେତେ ପାପ ଚିନ୍ତା
ମୁଖେ ଉତ୍ତର ନ ଆସେ,

ଉଭୟ ସଂକଟେ  ପଡ଼ ଯଥା ନର
ଯାଏ ନାହିଁ କେଉଁ ପାଶେ ।

ତାତର ବିଷାଦ		ଦେଖି ଧର୍ମପଦ
କହେ ସୁକୋମଳ ଭାଷା,
“କାରଣ ବଢ଼ାଇ		ରଖନ୍ତୁ ଜୀବନେ
ଛାଡ଼ ଏବେ ମୋର ଆଶା ।

ଏ ଜଗତେ କାହା		ପୁଅ ବା କାହାର
ଧନସ୍ତ୍ରୀ ମାୟା ଭିଆଣ,
ସାର୍ଥକ ଜନମ		ତାର ଏକା ଯିଏ
ପର ହିତେ ଯାଉ ପ୍ରାଣ ।

କହିଛନ୍ତି ମୁନି-		'କୁଳରକ୍ଷା ହେତୁ
ହେବ ଯେବେ ପ୍ରୟୋଜନ,
ତେଜିବ ଜଣକୁ		ହେଲେ ହେଉ ପଛେ
ସେ ଯେତେ ସ୍ନେହଭାଜନ ।

ନ ହୋଇ ବ୍ୟାକୁଳ		ଗ୍ରାମହିତେ କୁଳ
ତ୍ୟଜନ୍ତି ସାଧୁଜନ,
ଦେଶହିତେ ଗ୍ରାମ,		ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।'

କାରଣ କହେଇ		ଆମ ଜାତି ଘର
ଶିଳ୍ପିକୁଳ ଗଳାହାର,
ଯାଆନ୍ତୁ ଜୀବନ		ମୋ ଜଣକ ଲାଗି
ମନେ କିଛୁ ନ ବିଚାର ।

ତେଜ ମୋ ମମତା,   ହେବ ନାହିଁ ବାଟ
ଦେଖା ଆଉ ଏ ଜୀବନେ,
ଦିଅ ଅନୁମତି,   କର ଆଶୀର୍ବାଦ
ବିଦା ହେବି ଏହି କ୍ଷଣେ ।”

କହେ ବୁଦ୍ଧ, “ବାବୁ,   ଚାରି ବର୍ଷ ହେଲା
ଛାଡ଼ି ଆସିଅଛୁ ଘର,
ସେତେବେଳେ ଜନ୍ମ   ହୋଇଥିଲୁ ମାତ-
ଗର୍ଭରେ ଚାରି ମାସର ।

ପୁଅ କିବା ଝିଅ   ହେଲୁ କି ଅସତ୍ୟ
ଷଠାଂ ଗର୍ଭ ହେଲା ନାଶ,
ଭାବିବାକୁ ମତେ   କେବେହେଲେ ତନ୍ତ୍ରେ
ମିଳନାହିଁ ଅବକାଶ ।

କି ଯୋଗରେ ବାବୁ   ପଡ଼ିଥିଲୁ ଆସି
କଲୁ ଅବାଧ ସାଧନ,
ଏପରି ସୁଯୋଗ୍ୟ   ପୁଅ ପାଏ କିଏ
ଅଳପ ଭାଗ୍ୟରେ ଜନ !

ଉଜ୍ଜ୍ୱଳ ପରସ୍ପେ   ସୂଚକ ନମିତ୍ତେ
ଏବେ ଲୁଚିଯିବୁ କାହିଁ ?
ଏତେ ଭାଗ୍ୟର କି   ଏହି ପରିଣାମ
ଏହା କି ମୁଁ ଥିଲି ଜାଣି ? .

କେଉଁ ଜନ୍ମେ କାହା    ଖାଇବା ପତରେ
ପକାଇଥିଲି ମୁଁ ଧୂଳି,

କାହା ଅଞ୍ଜଳିରୁ    ଧନ ଦଣ୍ଡ ନେଇ
ଦେଲି ତା ହାତେ ଶାଙ୍କୁଳି !

କପାଳ ପାତରେ    ପୁଣ ରହିଅଛି
ମୋ ପ୍ରାରବ୍ଧ କର୍ମଫଳ,

ମଳକେ ମୋ ପଠ    ଜ୍ଞାନ ନେତ୍ରରେ
କାହିଁ ଫିଟୁ କରି ଅଛ ?

କାରଣ କହାଇ    ଆମ ଜାତିଭାଇ
ନୂତନ ମୋ ପ୍ରୟୋଜନ,

କୁଳ ଗଉରବ    ସଦା ରହିଥିବ
ଥିଲେ ତୋ ପରି ନନ୍ଦନ ।

ଯାର ଗୁଣରାଶି    ଜଗତେ ପ୍ରକାଶି
ରଖେ ଜାତିକୁଳ ମାନ,

ସେପରି ଗୋଟିକ    ସଙ୍ଗତେ ନୂତନ
ଆନ କୋଟିଏ ସମାନ ।”

ତହୁଁ ପୁଅ କେତେ    ବୋଲେ ଜଦ୍ କେତେ
“ଅଧିକ ନ କହ ଆଜି,

ଦେଉଛୁ ଉତ୍ତର    ଯିବି ଏଠା ଛାଡ଼ି
ଏବେ ରାତି ଥାଉଁ ଥାଉଁ ।”

କାନ୍ଦିପିବୁ ବାବୁ  ଫେଡ଼ କଣ ସବୁ
ରତ୍ନବୃଷ୍ଟିକ ଫସଣେ ?

ବର୍ତ୍ତି ରତ୍ନଥିଲେ  କେତେକଦେଲେ ଦେଖା
ଭାଣ୍ଡି ଦେବ ଜଣ ଭାଣେ !

କହେ ପୁଅ, "ବାପା,  ଜୀବନ-ମରଣ
ଲାଗିଅଛି ଅନୁକ୍ଷଣ,

ଜନମ ହୋଇଲେ  ଆଗେ ଅବା ପଛେ
ଅବଶ୍ୟ ହେବ ମରଣ ।

କାପୁରୁଷ ପରି  ମରିବା ଜଗତେ
ନୁହେ ନର ପଉରୁଷ

ପରହିତ ସାଧି  ମରେ ଯେ ମଣ୍ଡରେ
ସେହି ଏକା ସୁପୁରୁଷ ।

ମାନବ ଜୀବନ  ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ

କର୍ମେ ଜୀଏଁ ନର,  କର୍ମ ଏକା ତାର
ଜୀବନର ମାନଦଣ୍ଡ ।

ମୁହୂର୍ତ୍ତେ ମାତର  ଜଳନ୍ତ ଦୀପର
ଶିଖା ଟେକ ସ୍ତୁତାଶନ,

ଜନ୍ମ ଯେତେ ଭରେ  ଆଲୋକ ଉତ୍ତାପ
ତମ୍ବିଦରେ ଆଚରଣ

ଲଭ୍ୟ ମେ କ୍ଷଣକେ,                ତଥାପି ଏ ଲୋକେ
ରହେ ତା' ଆଦର ଯଶ;
କି ଲୋଡ଼ା ତହିଁରେ                ରହେ ଯେ ମହୀରେ
କୁହୁଳ ସହସ୍ର ବର୍ଷ ?

କହୁଛୁ ନଶ୍ୱର                ଏ ଜୀବନେ ଆଜ
ହେବ ନାହିଁ ଯେବେ ଦେଖା,
ଜୀଇଁବା ମରିବା                କପାଇଁ ପରସ୍ପର
ସେ ଦୁଇ କଥା ତ ଏକା ।

ଏ ମୋ ବଡ଼ ଭାଗ୍ୟ                ଘଟିଲା ସୁଯୋଗ
ମିଳି ଏଥି ଯଥା ବେଳେ,
ମୃଦୁଳ ଦେଉଳ                କୂଠ ଶିଳ୍ପତଳେ
ଶିଖିଲି ଯା ଶିଶୁ ଖେଳେ ।

ବାରଣ ବଢାଇ                ମୋର ଜାତଲାଇ
ସହୁ ନିନ୍ଦା ଅପମାନ,
ମଲେ ଯେବେ ଏଥି                କି ସୁଖ ମୋହର
କରି ମନ୍ଦିର ନିର୍ମାଣ ?

ବାରଣ ବଢ଼ାଇ-                ରଜତ ରଞ୍ଜିତ
ଯଶ ସନମାନ-ଧନ,
ଯାଇ ରାଜଦ୍ୱାରେ                କହ କି ପ୍ରକାରେ
ବଢ଼ିବ ମୋ ବଡ଼ ପଣ ?

ଶାକ୍ତୀ ବାନ୍ଧ ମୁଣ୍ଡ ଯିବ ରାଜଦାଣ୍ଡେ
ଦେଖି ଜାତି-କୁଳ-ନାଶ,
କି ରଙ୍ଗେ ରଚିବ ଏ ଜଘନ୍ୟ ଛନ୍ଦ
ଭବିଷ୍ୟତ ଇତିହାସ !

ଦେଖିଲ ଅମୃତା ରତ୍ନ ମରିଥାନ୍ତେ
ଯେବେ ସବୁ କାରାଗାରେ,
ମୋ କର୍ମ-କୌଶଳେ ଲଜ୍ଜା ଅପମାନ
ନ ଥାନ୍ତା ତାଙ୍କ ମୁଖରେ ।

ଉତ୍କଳର ଶିଳ୍ପି- କୁଳ ଇତିହାସେ
ନ ରହୁ ଏ କଳା ଦାଗ,
ତେଣୁ ସୃଷ୍ଟମନେ ଏ ଜୀବନ ଲାଗି
କର ବାପା ମୋତେ ତ୍ୟାଗ ।

“ନିର୍ବାଣ-କପୋତ”- ଅଦ୍ଭୁତ ଚରିତ
ଶୁଣିଛ ମହାଭାରତେ,
ଶରଣ ବଳନେ କପୋତ ବ୍ୟାକୁଳେ
ମିଳିଲା ଶିବ-ପୁରତେ ।

କାଶୀ ନରପତି କପୋତ ବିପତ୍ତି
ଦେଖି ପାଇଲେ କଷଣ,
ଯେବେ ପଞ୍ଜରାରେ ଉଡ଼ଣ ଆତୁରେ
ପଶିଲା ପକ୍ଷୀ ଶରଣ ।

ଯାଚକ ଯାଚଞ୍ଚା    ନ କଲେ ପୂରଣ
ଯଜ୍ଞଫଳ ଯାଏ ନାଶ,

ସନ୍ତାନ ବଧିଲେ    ହିଂସା ମହାପାପ
ଆବର କରିବ ଗ୍ରାସ ।

ଉଭୟ ସଂକଟେ    ନ ଦେଖି ଉପାୟ
ଶିବି ରାଜା ମହାମତି,

ବେନି ପକ୍ଷୀ ମଧ୍ୟେ    ଉଭ ଦୋଷ ସଧେ
ସଞ୍ଚାଣେ କଲେ ବଚନ-

'ଦେବ ପକ୍ଷିରାଜ,    ଯାହା ଇଚ୍ଛା ମାଗ
ରଖ କପୋତ ଜୀବନ';

କହଇ ସଞ୍ଚାଣ,    ଲୋଡ଼ା ନାହିଁ ଧନ,
ମୁଁ ଯେ କ୍ଷୁଧା ଅବସନ୍ନ ।

କପୋତ ରକ୍ଷାରେ    ଉଦାର ଅନ୍ତରେ
କର ଯେବେ ଅଭିଳାଷ,

ନିଜ ଅଙ୍ଗୁ କାଟି    ଭୁଞ୍ଜାଅ ମୋତେ
କପୋତ ସମାନ ମାଂସ ।'

ହରଷେ ନୃପତି    ଦେଖାଇଣ ଛାତ
କାଟିଦେଲେ ମାଂସ ଖଣ୍ଡେ,

ଯେତେମାଣେ ମାଂସ    କପୋତ ସମାନ
ହେଲା ନାହିଁ ତୁଳାଦଣ୍ଡେ ।

ଅଙ୍ଗ ଖଣ୍ଡେ ପୁଣି କାଟିଲେ ନୃମଣି
ସମ ନୋହିଲା ନିକିତି,
ଖଣ୍ଡେ ଖଣ୍ଡେ ଶେଷେ କଲିଜା କାଟିଲେ
କପୋତେ ପ୍ରକାଶି ପ୍ରୀତି

ନୃପ ଦୟାପଣ ଦେଖି ଦେବଗଣ
କଲେ ଶେଷେ ଜୟନାଦ,
ଚେତାଇ କପୋତେ ଗଲେ ନିଜ ପୁରେ
ଦେଇ ଦିବ୍ୟ ଆଶୀର୍ବାଦ ।

କପୋତର ହିତେ ଶିବି ଶୁଦ୍ଧଚିତ୍ତେ
କରି ଏ ଆତ୍ମ ଉତ୍ସର୍ଗ
ଇହ ପରଲୋକେ ଲଭିଲେ ଅକ୍ଷୟ
ଧର୍ମ ଆଦି ଚତୁର୍ବର୍ଗ ।

ଏ ଜଗତ ବାପ, ମହାମଖଶାଳା
ନରନାରୀ ଯଜମାନ,
ସେହି କୃଷ୍ଣ ସେହି ଚିରନ୍ତବେ କରେ
ଜୀବନ ଆହୁତି ଦାନ ।

ଭୁବନ ବନ୍ଦିତ ଦଧୀଚି ଚରିତ
ପୁରାଣେ ତ ଅଛି ଶୁଣି,
କହି ସ୍ବସ୍ତି ସ୍ବସ୍ତି ଦେଲେ ନିଜ ଅସ୍ଥି
ବଜ୍ରହିତେ ମହାମୁନି ।

ଅରଣ୍ୟରେ ପ୍ରାଣ ଉତ୍ସର୍ଗି ସୁଖରେ
କେତେ କେତେ ମହାଜନ,
ଲଭିଛନ୍ତି ତ୍ୟାଗେ ପରମ ସ୍ଫୂର୍ତ୍ତିତା
ମରଣେ ନିତ୍ୟ ଜୀବନ ।

କୋରକର ପ୍ରାଣ ଫୁଟେ ପ୍ରେମ ସରେ
ପବନେ ମିଶାଏ ବାସ,
ବିଶ୍ୱବ୍ୟାପୀ ରବି- ଉଜ୍ଜ୍ୱଳ ଆଲୋକେ
ବୃନ୍ତ ସିଗ୍‌ଧ ମନ୍ଦ ହାସ ।

ବାରଣ କରାଇ ରହିଛନ୍ତି ସିଏଁ
ଏବେ ତୁମ ମୁଖ ପ୍ରତି,
ପୁଅ ସ୍ନେହ ମାୟା ତୁଟାଇଲେ ତୁମେ
ଯିବେ ସକଳେ ବହିତ ।

ବାରଣ କରାଇ ମୁହଁକୁ ଅନାଇଁ
ମୋ ମମତା ଏବେଛାଡ଼
ଜାଣ ଏ ଦେହଙ୍କୁ ଗଡ଼ ମରିଛି ମୁଁ
ଭାଙ୍ଗି ମଥା ବୁଲୁ ହାଡ଼ ।

ସ୍ୱହିଁ ଏ ବେଢନେ, ସ୍ୱହିଁ ଜାତକୁଲେ,
ଛାଡ଼ ମନୁ ବୃଥା କଷ୍ଟ,
ସବୁର ଜନମ ପାଇ ନାହିଁ ମୁହିଁ
ହୋଇଅଛୁ ଗର୍ଭ ନଷ୍ଟ ।

କହୁଛ ଗବନା          ଦ ଦେବ ମୋ ଧନା
ବଂଶ ରକ୍ଷା ତୁମ୍ଭ ଅନ୍ତେ,

କହ ହେ ଈଶ୍ୱର          କାହା ବଂଶ ଚିର
ରହିଛି ବା ଏ ଜଗତେ ?

କେତେ ମହାଜନ          ଅସାଧ୍ୟ ସାଧନ
କରିଗଲେ ଜୀବନେ,

କାହିଁ ତାଙ୍କ ବଂଶ ?          ଅଛି ମାତ୍ର ଯଶ
ଆଜଯାଏ ମର୍ତ୍ତ୍ୟଭବନେ ।

ଏକର ବିନାଶେ          ଅନେକ ପ୍ରକାଶେ
ସୃଷ୍ଟିର ଏ ସତ୍ୟ ବିଧି,

ଏକର ଯା ସ୍ୱପ୍ନ          ଅନେକ ଉଦ୍ୟମ,
ଅନେକ ଏକର ସିଦ୍ଧି ।

ବଂଶ ଯନ୍ତେ ଯାଉ,          ଜାତି ବୃଦ୍ଧି ପାଉ
ସାଧୁ ଏ ଉଦାର ନୀତି,

କୋଣାର୍କ ଦେଉଳ          ଗାଉ ଚିରକାଳ
ତୁମ୍ଭ ପୁଣ୍ୟ ତ୍ୟାଗ-ଗୀତ ।

ପରେ ଦସ୍ୟୁ ବନ୍ଧ          ସତ୍ୟ ରକ୍ଷା ପାଇଁ
ପୂର୍ବେ କେତେ କେତେ ଲୋକ,

କାଟିଛନ୍ତି ନିଜ          ହାତେ ପୁତ୍ର ମୁଣ୍ଡ
ମୁହୂର୍ତ୍ତେ ନ କରି ଶୋକ ।

ଛନ୍ଦିତ କରମ    ମାନବ ଧରମ
ସାର ଭାବେ ଯେହୁ ସାଧେ,
ସେହୁ ଧନୁର୍ଦ୍ଧର    ରାମ ସାରଥର
ଉଦ୍ଧାରିବେ ସେହୁ ବାଟେ ।

ତୁମର ମୋହର    ଦେଖା ହେବକର
କହାଁ ଏତେ ମାୟା ମୋହ ?
ତେଜ ମୋ ମମତା    ଦେଖାଅ ବୀରତା
କର ନାହିଁ ଜାତି-ଦ୍ରୋହ ।

ଭଜ ମନ ସୁଖେ,    'ନାହିଁ ପୁଏ ବାପ
କାରଣ କଢ଼ାଇ ଦାୟ',
ଜଗତେ ଏ କଥା    ରହୁ କାଳେ କାଳେ
ନେଉଛୁ ଏବେ ବିଦାୟ ।

ଯାଉ ଆସିଲଣି    ଅନ୍ଧାର ରଜନୀ
ନିର୍ମଳ କଣେ ମୋ ପଥ;
ଦଅ ଆଶୀର୍ବାଦ    ଦେବ ଏ ଜୀବନେ
ଏହୁ ଶେଷ ଦଣ୍ଡକର ।"

( ୮ )

ଏତେ କହି ପୁଅ    ବାପ ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିଛି    ବଚନ ନ ଆସେ
ରକ୍ତ ସିକ୍ତ ନେତ୍ର-ନୀରେ ।

ମୂକ ଆଶୀର୍ବାଦ ଭଙ୍ଗିରେ ପ୍ରକାଶି
ସ୍ନେହେ ଚୁମ୍ବିଲ ବଦନ,
ଚାଲିଗଲ ପୁଅ କ୍ଷଣେ ବୃଦ୍ଧ ତହିଁ
ହେଲ ଶୋକେ ଅଚେତନ ।

ଅରୁଣ-ଆରକ୍ତ- କିରଣେ ରଞ୍ଜିତ
ହସେ ପୂରୁବ ଆକାଶ,
ମିଟି ନାହିଁ ନିଶା ଅଙ୍ଗ କଳାଶାଢ଼ୀ
ଫୁଟି ନାହିଁ ଉଷାହାସ ।

ଚନ୍ଦ୍ରଭାଗା-ନୀରେ ପାହାନ୍ତି ସମୀରେ
ଖେଳଇ ମୃଦୁ ତରଙ୍ଗ,
ଅଦୂର କାନନେ ପହର ପ୍ରମାଣେ
ରାବେ କୁମ୍ଭାଟୁଆ ଖଗ ।

ଏ ମୁହିଁ ଅଭାଗ୍ୟ ବେଳେ ଧର୍ମପଦ
ଚାଲିଗଲ ଅତି ଦୂରେ,
ସ୍ୱର ପଥେ ଚଢ଼ି ଉଠିଲ ତ୍ୱରିତେ
ଦେଉଳ ଶିଖ ଉପରେ ।

( ୯ )

ଚୌଦିଗେ ବିସ୍ତୃତ ସାଗର-ସୈକତ
ନିସ୍ତବ୍ଧ ବିଜନ ବେଳା,
ସମ୍ମୁଖେ ଅପାର ନୀଳ ପାରାବାର
ତରଳିତ ଊର୍ମି ଖେଳା ।

ଊର୍ଦ୍ଧ୍ୱେ ସ୍ଫୁଟେ ଶତ    ତାରକା-ଖଚିତ
ଅନନ୍ତ ନୀଳ ଆକାଶ,

ହେଲା ଶୁଦ୍ଧପ୍ରାଣେ    ଅପୂର୍ବ ଉଦାର
ମହାବିଶ୍ୱ ପରକାଶ ।

ଜଳ ସ୍ଥଳ ନଭ    ହେଲା ଏକ ଭାବ
ଲଭିଗଲା ଏକତା,

ଅନନ୍ତ ଅଭେଦେ    ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତ୍ୱ ।

ବାସ୍ତବ ହୃଦୟ    ମିଶିଗଲା ସେଠି
ମହା ଅନନ୍ତ ସତାନେ

ଅଜ ଭାବ ଭୁଲି    ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।

ସୂକ୍ଷ୍ମଭିକେ ପୁଣି    ସେ ଶୁଦ୍ଧ ହୃଦୟେ
ସ୍ଫୁଟିତ ବିଶ୍ୱସାର,

ଭିତର ବାହାର    କଲା ଏକାକାର
ଅମୃତ ସଙ୍ଗୀତଧାର ।

ହୋଇ ଏକ ଧ୍ୟାନ    ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ ଲହରେ,

ଗାଏ ଧର୍ମପଦ    ପରମ ଆନନ୍ଦେ
'ଜୟ ଜଗନ୍ନାଥ ହରେ ।'

"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ,
ପ୍ରଭୁ ଦୟାମୟ ମଙ୍ଗଳ-ଆଳୟ
ଜୟ ଜଗଦୀଶ ହରେ ।

ନମୋ ନିରାକାର ସର୍ବ ବିଶ୍ୱାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,
ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।

ଧରି ତୁମ୍ଭ ବଳ ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ,
ଆଦେଶେ ଜଳଧି ନ ଲଙ୍ଘେ ଅବଧି
ଜୟ ଜଗଦୀଶ ହରେ ।

ତବ ଦିବ୍ୟଜ୍ୟୋତି ପରକାଶେ ନିତି
ରବି ତାରା ନୀଳାମ୍ବରେ,
ତବ ପୁଣ୍ୟ ହାସେ କୁସୁମ ବିକାଶେ
ଜୟ ଜଗଦୀଶ ହରେ ।

ନଦୀ ବନ ଗିରି ଭୀମକାନ୍ତ ଶିରୀ
ତୁମ୍ଭରି କଟାକ୍ଷେ ଧରେ,
ଗାଏ ତୁମ୍ଭ ଗୀତ ଏ ବିଶ୍ୱ-ଭରିତ
ଜୟ ଜଗଦୀଶ ହରେ ।

ଅନନ୍ତ ମହିମା    ଅତୁଳ ସୁଷମା
ଦିଶେ ବିଶ୍ୱ ସ୍ତରେ ସ୍ତରେ,
ତବ ମହାପ୍ରେମେ    ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେ ମହାମହିମା    କି ବୁଝିବ ପକ୍ଷେ,
କ୍ଷୁଦ୍ର ନର କଳେବରେ,
କି ଭାଷାରେ ତବ    କହିବ ହେ ସ୍ତବ
ଜୟ ଜଗଦୀଶ ହରେ ।

ଦେଶ କାଳ ସୀମା—    ଅତୀତ ମହିମା
ଅଗୋଚର ଧୂର ନରେ,
ଏକ ଅଦ୍ୱିତୀୟ    ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

ଶୁଦ୍ଧ ସଦପୁର    ପରମ ଈଶ୍ୱର
ଆଶ୍ରା ଦଅ ଶ୍ରୀପଦୁରେ,
ପୁରୁ ତବ ଇଚ୍ଛା    ଏ ନର ପରାଣେ
ଜୟ ଜଗଦୀଶ ହରେ ।

ପ୍ରକାଶି କରୁଣା    ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ,
ତବ ତାହା ସିଦ୍ଧି    କରୁଣା-ବାରିଧି
ଜୟ ଜଗଦୀଶ ହରେ ।

ମୋ ହୃଦୟ-ସ୍ୱାମୀ,　　ତୁମ୍ଭେ ଅନ୍ତର୍ଯାମୀ,
ଦେଖାଉଛ ଯାହା ଥରେ,
ସେ ଅମୃତ-ଗନ୍ଧ　　ଦିଅ ପ୍ରାଣପନ୍ତ ।
ଜୟ ଜଗଦୀଶ ହରେ ।

ଚନ୍ଦ୍ରଭାଗା ମୋର　　ଘେନ ନମସ୍କାର
ଦିଅ ମୋତେ ନିଜ ଅଙ୍କ,
ବନ୍ଧୁ ମାତୃସ୍ନେହ　　ମିଶାଅ ଏ ଦେହ
ଅତଳ ଜଳଧି ସଙ୍ଗେ ।"

ଗାଁର ଏଇଥର　　ଶୁଣି 'ହରି ହରି'
ଡେଇଁଲା ସେ ନଈଜଳେ,
ନ ରହିଲା ଚାନ୍ଦ　　ଚିହ୍ନ କି ଆକାର
ଗଲା ମହାସିନ୍ଧୁ ତଳେ ।

ଆର ଦିନ ରାତ　　ଉଇଁଣ ଚମ୍ପିଲା
ଧର୍ମସ୍ତୁ ମନ୍ଦର-ଚୂଳ,
ନ ଜାଣିଲେ କେହି　　କଏ ସେ ମୂଳିଲା
କୋଣାର୍କର ଏ ଦେଉଳ ।

ନଷ୍ଟ ଗିରି ବନେ　　ସାଗର ଭାବନେ
ମିଶିଗଲା ହାଡ଼ ମାଂସ,
"ଧର୍ମଦେବ" ନାମ　　କାଳସିନ୍ଧୁ ଜଳ
ଅମୃତ-ଗରଭେ ସ୍ଥାନ ।

ଲୁଚ ଭଟେ ନାହିଁ ଅଚ୍ୟ ଛରଜନ
ଆଲେ ହୁଏ ତା ଉନ୍ନତି,
ନାହିଁ ଧର୍ମପଦ, ଶୁଣିଲୁ ଦେଜନ
ଅଛୁ ଏବେ ଜନଶ୍ରୁତ ।

●

# ବ୍ରହ୍ମତତ୍ତ୍ୱ

ବା

# ନଚିକେତା ଉପାଖ୍ୟାନ

# ବ୍ରହ୍ମତତ୍ତ୍ୱ

## ବା

# ନଚିକେତା ଉପାଖ୍ୟାନ



## ପ୍ରଥମ ଅଧ୍ୟାୟ

### ପ୍ରଥମ ବଲ୍ଲୀ

ଥିଲେ ଋଷି ଉଦ୍ଦାଳକ ସୁଗୁଣ-ପ୍ରଧାନ
ବାଜଶ୍ରବା ତାଙ୍କ ବଂଶେ ସୁଯୋଗ୍ୟ ସନ୍ତାନ ।

ସ୍ୱର୍ଗଲାଭ ଆଶେ କଲେ ବିଶ୍ୱଜିତ ଯାଗ
ଧନ ଦାନେ ସର୍ବସ୍ୱାନ୍ତ ହେଲେ ମହାଭାଗ ।

ବିଚକ୍ଷଣ ନଚିକେତା ଥିଲେ ତାଙ୍କ ସୁତ
ବାଳକାଳୁଁ ତାଙ୍କ ମନ ସଦା ଶୁଦ୍ଧପୂତ ।

ଦେଉଥିଲେ ପିତା ଯେବେ ବୁଢା ଗାଈ ଦାନ
ଦେଖି ଦୁଃଖେ ଅବସନ୍ନ ନଚିକେତା-ପ୍ରାଣ ।

ମର୍ମେ ବ୍ୟଥା ପାଇ ମନେ କଲେ ସେ ବିସ୍ତର,
"ଏଭଳି ଗୋଦାନେ ଅଛି କିବା ଉପକାର"?

ଏ ସକଳ ଗୋରୁ ଆହା ଜୀର୍ଣ୍ଣ କ୍ଷୀଣ ଅଙ୍ଗ
ହାଇଛନ୍ତି ଇନ୍ଦ୍ରିୟ ଲୋପ, ଯାଇଛନ୍ତି ଶକତି ।

ପିଇଛନ୍ତି ଶେଷ ଢୋକ ଶରଧନ ପାଣି
ଖାଇଛନ୍ତି ଶେଷ ଘାସପୁଡ଼ା ଏଣୁ ଜାଣି ।

ଦୁଗ୍ଧ ଦେବା ଲାଗି ଆଉ ନାହିଁ ଦେହେ ବଳ
ଏ ଗୋଦାନେ ଦୁଃଖମୟ ଲୋକ ମିଳେ ଫଳ !”

ପିତାଙ୍କୁ ସେ ନଚିକେତା ପୁଚ୍ଛନ୍ତି ବଚନ,
“କାହା ଦାନ ଲାଗି ମୋତେ କଳ୍ପିଛ ଆପଣ ?”

ବାରମ୍ବାର ପଚାରନ୍ତେ ପିତା ବିରକତେ
କହିଲେ, “ଯମଙ୍କୁ ଦେବି ଏହି ଲୋଡେ ତତେ ।”

ଶୁଣି ଏ ବଚନ ପୁତ୍ର ଭାବନ୍ତି ହୃଦୟେ,
“କପାଇଁ ପେଷିବେ ପିତା ମୋତେ ଯମାଳୟେ ?

ଛନ୍ତି ପିତାଙ୍କର ପୁତ୍ର ଶିଷ୍ୟ ଯେତେ ଜଣ
ସେବାଧର୍ମେ ମୁଁ ତ ନୁହେଁ ଅତି ଅକିଞ୍ଚନ ।

ନ ହେବି ଉତ୍ତମ ମଧ୍ୟେ ଯେବେ ଶ୍ରେଷ୍ଠତମ
ମଧ୍ୟମ କୋଟିରେ କେବେ ନୁହେ ମୁଁ ଅଧମ
ଯାହାହେଉ କ୍ରୋଧେ ପିତା କହିଲେ ଯେ କଥା
ପାଳିବି ତା, ନ କରିବି କେବେ ହେଁ ଅନ୍ୟଥା ।”

କ୍ଷଣେ ଅନ୍ତେ ପିତାଙ୍କର କ୍ରୋଧ ଉପଶମେ ।
‘କି କହିଲି’ ବୋଲି ବ୍ୟଥା ପାଇଲେ ମରମେ ।

ଚାହିଁ ନଚିକେତା ସ୍ନିଗ୍ଧ କୋମଳ ବଚନେ
କହନ୍ତି, "ହେ ପିତା, କାହିଁ ଦୁଃଖ କର ମନେ ?

ଆମ୍ଭ ପିତୃ ପିତାମହ ପୂର୍ବ ଆଚରଣ
ଯେ ବିଧାନେ ଚଳୁଛନ୍ତି ଏବେ ସାଧୁଗଣ ।

ଶୁଦ୍ଧ ବୁଦ୍ଧ ଚିତ୍ତ ତାହା କର ହେ ଈଶ୍ୱର
କର ନାହିଁ କେବେ ନିଜ ଉକ୍ତି ପ୍ରତ୍ୟାହାର ।

ବ୍ରୀହି ପରି ଶସ୍ୟ ସମ ମରଇ ମାନବ
ଶସ୍ୟସମ ହୁଏ ପୁଣି ତାହାର ଉଦ୍ଭବ ।

ଜନମ-ମରଣ-ବଶ ଅନୁକ୍ଷଣ ଲୋକ
ପେଷ ମୋତେ ଯମପୁରେ କର ନାହିଁ ଶୋକ ।"

ପିତୃସତ୍ୟ ରକ୍ଷା ଲାଗି ସେ ଯୋଗ୍ୟ ତନୟ
ଆଜ୍ଞା ଶିରେ ବହି ବେଗେ ଗଲେ ଯମାଳୟ ।

ନଚିକେତା ପ୍ରବେଶିଲେ ଯେବେ ଯମପୁରେ
ଥିଲେ ଯମ ଘରବାସେ କାହିଁ ବହୁ ଦୂରେ ।

ବାହୁଡ଼ିଲେ ତିନି ଦିନ ଅନ୍ତେ ନିଜ ବାସେ
ଭୃତ୍ୟଗଣ ଜଣାଇଲେ ଶମନ ସକାଶେ ।

"ଅଗ୍ନି ସମ ବ୍ରହ୍ମଦୀପ୍ତି ରୂପ କାନ୍ତିମନ୍ତ
ବ୍ରାହ୍ମଣ ଅତିଥି ତବ ଗୃହେ ଉପଗତ ।

ତିନି ଦିନ ହେଲା ବିପ୍ର ରହନ୍ତି ନିରାହାରେ,
ପୂଜ ତାଙ୍କୁ ଜଳୁସ୍ୱର୍ଣ ଉଚିତ ବେଗରେ ।

ବ୍ରାହ୍ମଣ ଅତିଥି ଗୃହେ ହେଲେ ଅନାଦୃତ
ନାଶନ୍ତି ଅନଳ ପ୍ରାୟେ ସକଳ ସୁକୃତ ।

ଗୃହସ୍ଥର ଗୃହେ ଯେବେ ଅତିଥି ବ୍ରାହ୍ମଣ
ହରନ୍ତି ନ ପାଇ ଯଥାବିହିତ ଭୋଜନ ।

ସେ ମନ୍ଦମତିର ଯାଏ ସର୍ବଧର୍ମ ନାଶ
ନ ରହେ ତାହାର କେବେ ପଶୁପୁତ୍ର ଆଶ ।

ବାଞ୍ଛା ସିଦ୍ଧି ନୁହେ, ଆଶା ନ ହୁଏ ପୂରଣ
ପ୍ରିୟ ସତ୍ୟ ସମ୍ଭାଷଣ ତାର ଅକାରଣ ।

ଯଜ୍ଞ କଲେ ଯଜ୍ଞଫଳ ନ ହୁଏ ପ୍ରାପତ
ତଡ଼ାଗ ଉଦ୍ୟାନ ଦାନେ ନୁହେ ପୁଣ୍ୟବନ୍ତ ।

ନ ଲଭେ ଜୀବନେ କେବେ ସାଧୁସଙ୍ଗ ଫଳ
ନିଫଳ ହୁଅନ୍ତି ତାର ସୁକୃତ ସକଳ ।"

ଏଷମ ବାରତା ଶୁଣି ଭୃତ୍ୟଗଣ ମୁଖେ
ନଚିକେତା ସନ୍ନିଧାନେ ଯମରାଜା ଦୁଃଖେ
କହନ୍ତି କାତର ଚିତ୍ତେ ବିନମ୍ର ବଚନ,

"ତିନ ଦିନ ନିରାହାର ମୋ ଗୃହେ ଆପଣ !

ଆପଣ ଅତିଥି ପୁଣି ବିଶେଷେ ବ୍ରାହ୍ମଣ
ତେଣୁ ମୋର ନିତ୍ୟ ପୂଜା ଅର୍ଚ୍ଚନା ଭଜନ ।

କ୍ଷମ ଅପରାଧ ବିପ୍ର, ନମେ ତବ ପଦ
ହେଉ ମୋର ସର୍ବ ଶୁଭ ନ ଘଟୁ ବିପଦ ।

ତିନ ରାତ୍ର ଲାଗି ଯାହା ଲଙ୍ଘି ଅନ୍ନ ବାରି
ମାଗ ବର ଅତିଥି ଦେବ ସତ୍ୟ ଏ ମୋ ଘରେ ।”

ଯମ ବାକ୍ୟ ନଚିକେତା ଭଣନ୍ତି ଏପର,
“ମୋ ଠାରେ ଆପଣ ଯେବେ ହେଲ ସୁପ୍ରସନ୍ନ ।
ପିତା ମୋର ବାଜଶ୍ରବା ଗୌତମ ତାପସ
ମୋ ଉପର-ଭାବନାରେ ନୁହନ୍ତୁ ଅବଶ ।
ନ ଜନମୁ ତାଙ୍କ ହୃଦେ କୋପ ମୋହ ପୁଣ
ରହନ୍ତୁ ସଦା ସେ ଶାନ୍ତ ସୁପ୍ରସନ୍ନ ମନ
ତବ ପୁରୁ ଫେରିଗଲେ ଦେଖି ମୋ ବଦନ
ଚିହ୍ନନ୍ତୁ କରନ୍ତୁ ପୁଣି ପ୍ରିୟ ସମ୍ଭାଷଣ ।
ମୋ ପ୍ରତି ସଦୟା ଯେବେ ତବ ଦଣ୍ଡଧର
ଦେଉ ଆଜ୍ଞା ଦଅ ମତେ ଏ ପ୍ରଥମ ବର ।”

କହେ ଯମ, “ନଚିକେତା ନେଲି ମୁଁ ଏ ବର
ତବ ଉପରରେ ପିତା ନ ହେବେ କାତର ।
ସୁଖେ ପୁହାଇବେ ନିଶି ନିଶ୍ଚିନ୍ତ ଶୟନେ
ତୁମ୍ଭ ପ୍ରତି ପୂର୍ବ ପ୍ରୀତି ରଖିଥିବେ ମନେ ।
ମୃତ୍ୟୁମୁଖୁଁ ଲେଉଟିବା ଦେଖି ନିଜ ଘରେ
ନ କରି ସେ କୋପ, ନେବେ ତୁମ୍ଭଙ୍କୁ ସାଦରେ ।”

କହେ ପୁଣି ନଚିକେତା, “ସ୍ୱର୍ଗେ ନାହିଁ କ୍ଷୟ,
ନାହିଁ ମୃତ୍ୟୁ, ନାହିଁ ଜରା, ନାହିଁ କିଛି ଭୟ ।

ନ ଜାଣନ୍ତି ସ୍ୱର୍ଗଲୋକେ କ୍ଷୁଧା ତୃଷା ତ୍ରାସ
ଅତିକ୍ରମି ଶୋକ ସଦା କରନ୍ତି ଉଲ୍ଲାସ ।

ଯେ ଅଗ୍ନି ପ୍ରସାଦେ ଲଭି ଅକ୍ଷୟ ଅମୃତ
ସ୍ୱର୍ଗଲୋକ ନିରନ୍ତର ହୁଏ କୃତକୃତ୍ୟ ।

ସେ ଅଗ୍ନି ତତ୍ତ୍ୱ ଚିତ୍ତ ତୁମ୍ଭର ଗୋଚର
କହ ଏ ଶ୍ରଦ୍ଧାଧୀ ଜନେ—ଏ ଦ୍ୱିତୀୟ ବର ।”

“ସ୍ୱର୍ଗ-ସିଦ୍ଧିଦାତା ଅଗ୍ନି ନିଗୂଢ଼ ବୃତ୍ତାନ୍ତ
ଜାଣଇ ମୁଁ ନଚିକେତା” କହନ୍ତି କୃତାନ୍ତ ।

‘‘ଲଭଇ ଅନନ୍ତ ସୁଖ ସ୍ୱର୍ଗଧାମେ ନର
ପ୍ରସନ୍ନ ହେଲେ ଯେ ଦିବ୍ୟ ଅଗ୍ନି ବୈଶ୍ୱାନର ।
ସର୍ବ ଲୋକ ସ୍ଥିତି ହେତୁ ସେ ପୁଣ୍ୟ ପାବକ
ସର୍ବ ଅନ୍ତର୍ଯ୍ୟାମୀ ସର୍ବ ବୁଦ୍ଧି-ନିୟାମକ ।

କହୁଛି ଏଣୁ ଯେ ତତ୍ତ୍ୱ ହେତୁ କର ଜାଣ”
ଆବର ବୁଝାନ୍ତି ତତ୍ତ୍ୱେ ଦେବ ଜନ୍ତୁଗଣ ।

ସର୍ବଲୋକ ଆଦି ହେତୁ ଅନଳ ଚୟନ
ଯଜ୍ଞ ଇଷ୍ଟକର ସଂଖ୍ୟା ପ୍ରକାର ପ୍ରମାଣ ।

ଯଜ୍ଞ ଆମନ୍ତ୍ରିତ ଅଗ୍ନି ଅର୍ଚ୍ଚନ ବିଧାନ
ଯମ ମୁଖୁଁ ଶୁଣି ସବୁ ଗୂଢ଼ ତତ୍ତ୍ୱ ଜ୍ଞାନ ।
ସ୍ଥିର ଚିତ୍ତେ ନଚିକେତା କରନ୍ତି ଆବୃତ୍ତି
ତୁଷ୍ଟ ହେଲେ ଯମରାଜା ଦେଖି ତାଙ୍କ ବୃତ୍ତି ।

ସୁଯୋଗ୍ୟ ଶିଷ୍ୟ ନଚିକେତା ବୁଝିଲେ ଅନ୍ତରେ
କହିଲେ ମହାତ୍ମା ତାଙ୍କୁ ଅତି ପ୍ରୀତିଭରେ—

"ତୁମ୍ଭଙ୍କୁ ଦେବି ମୁଁ ଆଜ ଅନ୍ୟ ଏକ ବର
ତବ ନାମ ବୋଲାଇବେ ସ୍ୱର୍ଗ-ବୈଶ୍ୱାନର ।

ନଚିକେତା ଅଗ୍ନି ବୋଲି ହେବ ସେ ବିଦିତ
ଲଭ କର୍ମମୟ ସ୍ୱର୍ଗ ଚିତ୍ତ ଆନନ୍ଦିତ ।

ପିତାମାତା ଗୁରୁଜନ ଆଜ୍ଞା ଘେନି ଶିରେ—
ଦୃଢ଼ ଯେ ତ୍ରିସନ୍ଧ୍ୟା ଅଗ୍ନି ନମୃତ ମଧ୍ୟରେ

ଯଜ୍ଞ ଦାନ ଅଧ୍ୟୟନେ ରତ ଅନୁକ୍ଷଣ
ତରଇ ସେ ଜନ୍ମ-ମୃତ୍ୟୁ ଦୁସ୍ତର ବନ୍ଧନ ।

ହିରଣ୍ୟ ଗରଭୁଁ ଜାତ ଶସ୍ତ୍ରପ୍ରକାଶକ
ବନ୍ଦନୀୟ ସର୍ବଜ୍ଞାତା ସେ ଦେବ ପାବକ ।

ଆତ୍ମା ରୂପେ ପ୍ରାଣୀହୃଦେ ବିଜନ୍ତି ସତତ
ବୁଝି ସେହୁ ଅନୁଭବେ ଆଣଇ ଏ ତତ୍ତ୍ୱ ।

ଲଭଇ ସେ ଅନୁପମ ଅଖଣ୍ଡ ସନ୍ତୋଷ
ତାହାପାଇଁ ଲାଗି ଛୁଟେ ଭବଭ୍ରାନ୍ତ ଦୋଷ ।

ବିଶ୍ୱର ଲକ୍ଷ୍ୟକେ ବେଶ୍ମ କରି ସେ ରଚନା
ସାଧେ ନଚିକେତା ଅଗ୍ନି ଯେ କାର ଅର୍ଚ୍ଚନା

ଆତ୍ମବଳେ ଧ୍ୟାନେ ତାହା କରି ଏକ ଲୟ
ମୃତ୍ୟୁ-ପାଶ ଛାଡେ ସେହୁ ନୋହୁ ତାକୁ ଭୟ;

ରାଗ ଦ୍ୱେଷ ଆଦି ଯେତେ ଦୁଃଖର ନିଦାନ
ମାନବ ଜନମେ ତାର ପାଏ ଅବସାନ ।

ଶୋକେ ଦୁଃଖେ କେବେ ସେହୁ ନ ହୁଏ ଚଞ୍ଚଳ
ଭୁଞ୍ଜେ ମର୍ତ୍ତ୍ୟେ ମହାମୋଦ ସ୍ୱର୍ଗଲୋକ ଫଳ ।

କହିଲି ଏ ନଚିକେତା ଅଗ୍ନି ବିବରଣ ।
ଲୋଡ଼ିଲ ଦ୍ୱିତୀୟ ବରେ ଯେ ତତ୍ତ୍ୱ ଆପଣ ।

ତବ ନାମେ ହେବେ ଏହି ଅଗ୍ନି ଲୋକେ ଖ୍ୟାତ
ତୃତୀୟ ବର ମାଗ କହ ଏବେ ତାତ !"

କହେ ନଚିକେତା, "ମନେ ଲାଗେ ମୋ ସନ୍ଦେହ
କି ହୁଏ ମାନବ ? ଯେବେ ତେଜେ ନରଦେହ ।

କହନ୍ତି କେତେକ ଆତ୍ମା ଯାଏ ପରଲୋକେ
ବିଶ୍ୱାସ କରନ୍ତି ନାହିଁ ପରଲୋକେ ଥୋକେ ।

ଚିରକାଳ ରହିଛି ଏ ସଂଶୟ ଜଗତେ
ଦିଅ ଉପଦେଶ ଯେହ୍ନେ ଯିବ ମୁଁ ପରତେ ।

ପରଲୋକ ତତ୍ତ୍ୱ ପ୍ରଭୁ ହେଉ ମୋ ଗୋଚର
ଦୟାକରି ଦିଅ ମୋତେ ଏ ତୃତୀୟ ବର ।"

କହେ ଯମ, "ପଚାରିଲ ଯେ ତତ୍ତ୍ୱ ଆପଣ
ସଂଶୟ-ଜଡ଼ିତ ତହିଁ ପୂର୍ବେ ଦେବଗଣ ।

ଆତ୍ମଧର୍ମ ତତ୍ତ୍ୱ ଏହୁ ସୂକ୍ଷ୍ମ ସୁଗହନ
ବୁଝିବେ ସହଜେ କାହିଁ ଜନସାଧାରଣ ?

ଏ ବର ନିମନ୍ତେ ଆଗ୍ରହ କଠୋର ନ କର
ଛାଡ଼ ଏହା ନଚିକେତା, ମାଗ ଅନ୍ୟ ବର।"

କହିଲେ ନଚିକେତା, "ଯାହା କହିଲ ଆପଣ
ଏ ତତ୍ତ୍ୱ ସଂଶୟ ପୂର୍ବେ କଲେ ଦେବଗଣ।

ଉତ୍ତର କଠିନ ଏହା ନୁହଇ ସୁଗମ
ସତ୍ୟ, ମାତ୍ର ତୁମ୍ଭ ପରି କାହିଁ ଅନ୍ୟତମ।

ଏ ତତ୍ତ୍ୱର ଉପଯୁକ୍ତ ବକ୍ତା ଦଣ୍ଡଧର
ଏହା ବିନୁ ନାହିଁ ମୋର ଶ୍ରେଷ୍ଠ ଅନ୍ୟ ବର।"

ଦେଖିବାକୁ ନଚିକେତା ହୃଦୟ-ଦୃଢ଼ତା
କହିଲେ ଦେଖାଇ ଲୋଭ ସେ ଯମ ଦେବତା—
"ଶତ ବର୍ଷ ଆୟୁଜୀବୀ ପୁତ୍ରପୌତ୍ରଚୟ
ମାଗ ଅଗଣିତ ଧେନୁ ସ୍ୱର୍ଣ୍ଣ ହସ୍ତୀ ହୟ।

ମାଗ ଏ ଧରଣୀ ତଳେ ମହା ଆୟତନ
ଯେତେ କାଳ ଇଚ୍ଛା ରହ ଧରିଣ ଜୀବନ।

ଅବା ଏହିପରି ଅନ୍ୟ ଯାହା ବାଞ୍ଛା ତବ
ମାଗ ବିତ୍ତପୂର୍ଣ୍ଣ, ମାଗ ଅତୁଳ ବିଭବ!
ବିଶାଳ ମଣ୍ଡଳେ ତୁମ୍ଭେ ହୁଅ ଅଧୀଶ୍ୱର
ପୂର୍ଣ୍ଣ କରିବି ମୁଁ ଯେତେ କାମନା ତୁମ୍ଭର।

ଯେ ସୁଖ ସୌଭାଗ୍ୟ ଲଭି ଲୋଡ଼ଇ ମାନବ
ମର୍ତ୍ତ୍ୟବାସୀ-ଜନେ ଯାହା ଅତ୍ୟନ୍ତ ଦୁର୍ଲ୍ଲଭ।

ସ୍ୱଚ୍ଛନ୍ଦେ ମାଗ ସେ ସର୍ବ କର ଯା କାମନା
ଦେଖୁଅଛ ଏଥି ଯେତେ ଅମର-ଅଙ୍ଗନା ।

ସ୍ୱଚ୍ଛରତ୍ନ ସୁଖଚିତ ସୁନ୍ଦର ସ୍ୟନ୍ଦନ
ଶୁଣୁଛ ଯେ ତୂରୀ ଭେରୀ ବାଦିତ୍ର ନିଃସ୍ୱନ ।
ମାନୁଷଦୁର୍ଲ୍ଲଭ ଏତୁ ଅଶେଷ ସମ୍ପଦ
ଖଟନ୍ତୁ ଏ ସର୍ବେ ସ୍ୱସ୍ଥ ସଦା ତୁମ୍ଭ ପଦ ।

କିନ୍ତୁ ନଚିକେତା, ଘେନ ମୋର ନିବେଦନ
ନ ପଚାର ମୃତ୍ୟୁତତ୍ତ୍ୱ କଦାପି ଆପଣ ।”
କହେ ନଚିକେତା, “ଯେ ଯେ ସମ୍ପଦ ସମ୍ଭୋଗ
କହିଲ ଅନ୍ତକ ନୁହେ ମୋର ଉପଯୋଗ ।

ମାନବ ଇନ୍ଦ୍ରିୟ ତେଜ, ଇନ୍ଦ୍ରିୟ ବିଳାସ
ବିଳାସ-ସାମଗ୍ରୀ, ସବୁ ଯାଏ କ୍ଷଣେ ନାଶ ।

ସଂସାର-ସମ୍ପଦ ରାଶି କ୍ଷଣକାଳସ୍ଥାୟୀ
ଆଜି ଅଛି ଯାହା ପୁଣି କାଲିକି ତା ନାହିଁ ।

ଯାଚୁଛ ପରମ ଆୟୁ ଆପଣ ଯେ ମତେ
କେତେ କାଳ ସ୍ଥାୟୀ ତାହା କହ ହେ ଜଗତେ ?

ବ୍ରହ୍ମମୁଖ ହେଲେ ସୁଦ୍ଧା ଯାଏ ଦିନେ କ୍ଷୟ
ନାହିଁ ମୋର ଲୋଡ଼ା ଆୟୁ ରଥ ହସ୍ତୀ ହୟ
ବାହନ ବନିତା, ନୃତ୍ୟ ଗୀତେ ପ୍ରୟୋଜନ
ନାହିଁ, ସେ ସକଳ ଥାଉ ତୁମ୍ଭର ଶମନ !

ବିପୁଳ ବିଭବେ ନର ନ ପାଏ ତୃପତି
ବିଶେଷ ସାକ୍ଷାତ ତବ ଯେବେ କଲୁପଣ !

ବହିଛି ମୋ ଭାଗ୍ୟ, ତବ ଅଭୟ ବସ୍ତୁପୁ
ନବ ଯମଦଣ୍ଡ ମୋର ନାହିଁ ମୃତ୍ୟୁଭୟ !

ତେଣୁ ମୋର ଅନ୍ୟ ବାଞ୍ଛା ନାହିଁ ଯମରାଜ !
ଦିଅ ଆଦ୍ୟେ ବର କହ ମୃତ୍ୟୁତତ୍ତ୍ୱ ଆଜ ।

ଅଜର ଅମରଗଣ ସନ୍ନିଧାନେ ଆସି
ଜରାମୃତ୍ୟୁ ଦେହ କିଏ ଧରାତଳବାସୀ ?

ଜାଣି କ୍ଷଣସ୍ଥାୟୀ ସୁଖ ସୌଭାଗ୍ୟ ସମ୍ପତ୍ତି
ଧନଜନ ରୂପ ରାଜ୍ୟ କନ୍ୟାଙ୍ଗନା ରତି ।

ଏବେ କି ଲୋଭିବ କହ ସୁଦୀର୍ଘ ଜୀବନ
ବୁଝି ଅଜ ଲଭ୍ୟ ମହାମୂଲ୍ୟ ପ୍ରୟୋଜନ ?

ପରମ ଅଭୀଷ୍ଟ, ସିଦ୍ଧି ହେବ ଯେ କୃପାଏ
ପରଲୋକେ, କହିଅ ସେ ତତ୍ତ୍ୱ ଯମରାଏ !

ମରଣ ଅନ୍ତରେ ଆତ୍ମା ଥାଏ କି ନ ଥାଏ
ମର୍ତ୍ତ୍ୟେ ଲୟ ପାଏ କିବା ପରଲୋକେ ଯାଏ ?

ଚିରଦିନ ମାନବର ରହିଛି ସଂଶୟ
ଅତି ଗୂଢ଼ ଗହନ ଏ ନିଗୂଢ଼ ବିଷୟ ।

ଦିଅ ଉପଦେଶ, କର ସଂଶୟ ମୋଚନ
ନାହିଁ ମୃତ୍ୟୁ, ମୋର ଅନ୍ୟ କରେ ପ୍ରୟୋଜନ ।”



## ଦ୍ଵିତୀୟ ବଲ୍ଲୀ

ଜାଣିଲେ ପରୀକ୍ଷା କରି ଏବେ ଦେବ ଯମ
ନଚିକେତା ଦୃଢ଼-ନିଷ୍ଠା ବୈରାଗ୍ୟ ପରମ ।

ଉପଯୁକ୍ତ ଶିଷ୍ୟ ହୋଇ ବୁଝି ଶୁଦ୍ଧାତ୍ମା
ବିଦ୍ୟା ଅବିଦ୍ୟାର ତତ୍ତ୍ୱ କହିଲେ ମହାତ୍ମା ।

"ବ୍ରହ୍ମବିଦ୍ୟା କହେ ଏବେ ଶୁଣ ନଚିକେତ !
ଯେ ଜନେ ବ୍ରହ୍ମଜ୍ଞାନ ତବ ଅଭିପ୍ରେତ ।

ଶ୍ରେୟ ତାହା ମାନବର ମୋକ୍ଷ ବିଧାୟକ
ପ୍ରେୟ ଯାହା ଲୋଡ଼େ ନର, ତହିଁରୁ ପୃଥକ ।

ଶ୍ରେୟ ପ୍ରେୟ ବେନି ଭାବେ ଆଶ୍ରେ ମାନବ
ପ୍ରେୟ ପଥେ ଜଡ଼ଇ ଯେ ସଂସାର-ବନ୍ଧନ ।

ଶ୍ରେୟ ପଥ ଅନୁସରି କାଟେ ଭବପାଶ
ପାଏ ପୁରୁଷାର୍ଥ ଯା'ର ନାହିଁ କେବେ ନାଶ ।

ଲୋଡ଼ଇ ଯେ ପ୍ରେୟ ପଥ ଧନ-ଦାରା-ଲୋଭେ
ହରାଇ ପରମପଦ ପଡ଼େ ଘୋର କ୍ଷୋଭେ ।

ମାନବ-ସମ୍ମୁଖେ ଅଛି ଶ୍ରେୟ ପ୍ରେୟ ବେନି
ବିବେକୀ ବିଚାର କରେ ଗୁଣ ଦୋଷ ଘେନି ।

ଗୁଣ ଦୋଷ ବୁଝିକରେ କର୍ତ୍ତବ୍ୟ ନିଶ୍ଚୟ
ହଂସ ଯଥା ପିଇ କ୍ଷୀର ଛାଡ଼ିଯାଏ ପୟ ।

ଶ୍ରେୟ ହେତୁ ସେବେ ଧୀର ଶ୍ରେୟକୁ ସାଦରେ
କାମଲୋଲ ମୂଢ଼ଜନ ପ୍ରେୟ ଅନୁସରେ ।

ଲୋକେ ମତ ଧନଜନ ଆଦି ଭୋଗଚୟ
ଧୀର କାମ୍ୟେ ମୋକ୍ଷପଦ ଅନନ୍ତ ଅକ୍ଷୟ ।

ପୁତ୍ର ଧନ ରାଜ୍ୟ ଆଦି ରମ୍ୟ ବସ୍ତୁ ଚୟ
ରୂପସୀ ରମଣୀ ଅବା ସୁରୋପଭୋଗ୍ୟ ନିଚୟ ।

ରମ୍ୟ ଲୋଭନୀୟ ଯାହା ଦେଖିଲ ମାନବ
ବୁଝିଥିଲ ଚିରସ୍ଥାୟୀ ନୁହେ ସେ ସରବ ।

ତେଣୁ ମୁଁ ଯାଚିଲେ ସୁଦ୍ଧା ନ କଲ ଗ୍ରହଣ
ଧନ୍ୟ ତୁମ୍ଭେ ନଚିକେତା ବଡ଼ ବିଚକ୍ଷଣ !

ଲୋଭର ଯେ ମଣିମୟ ବସ୍ତ୍ର ରତ୍ନହାରେ
ବଦ୍ଧ ମୂଢ଼ଜନ ବୁଡ଼ିମରନ୍ତି ସଂସାରେ ।

ଦେଲେ ହେଁ ସେ ଭବପାଶ ଅତି ମନୋରମ
ନ ନେଲ ନ ହେଲା ତହିଁ ତବ ମନୋଭ୍ରମ ।

ବିଦ୍ୟା ଅବିଦ୍ୟାର ତତ୍ତ୍ୱ କଲ ହେ ବିବୃତ
ଉପରେ ଅଛଇ ସେ ଉଭୟ ପ୍ରକୃତ ।

ନିଶ୍ଚୟ ଆଲୋକ ଏକ, ଅନ୍ୟ ଘୋର ତମ,
ମୁକତି ଏକର ଫଳ, ଅନ୍ୟର ବନ୍ଧନ ।

ଜାଣିଲି ତୁମ୍ଭଙ୍କୁ ବତ୍ସ ବିଦ୍ୟା-ଅଭିଳାଷୀ
ନୁହ ନଚିକେତା, କାମସମ୍ଭୋଗ-ପ୍ରୟାସୀ ।

ବହୁ କାମ ପ୍ରଲୋଭନେ ନ ଟଳିଲା ମନ
ନ ଗ୍ରହିଲ ପ୍ରେୟପଥ ଧନ୍ୟ ବିଚକ୍ଷଣ !

ପରିବୃତ ହୋଇ ଘୋର ଅଜ୍ଞାନ-ଅନ୍ଧାରେ
କାମସ୍ରୋତେ ବିମୋହିତ ସଦା ଯେ ସଂସାରେ

ମଣନ୍ତି ନିଜକୁ ଧୀର ପଣ୍ଡିତ ପ୍ରବୀଣ
ଆଧି ବ୍ୟାଧି ଜରାମୃତ୍ୟୁ ଦୁଃଖ ଶରଣନ ।

ଭ୍ରମନ୍ତି ଏମ ଅବିବେକୀ ବହୁ ବକ୍ରଗତି
ଏକ ଅନ୍ଧ ଆନ ଅନ୍ଧେ ଚଳାଏ ଯେମତ ।

ବାଳକ ସ୍ୱଭାବ ଯେହୁ, ମୂଢ ବୁଦ୍ଧିମନ୍ତ
ମନ ଯାଇ ବିତ୍ତ ମୋହେ ମୋହିତ ସତତ;

ପ୍ରମାଦଜଡିତ ମତି ଯେ ମୂଢ଼ ପାମର
ନ ବୁଝେ ମରଣ ଅନ୍ତେ ଅଛି ଲୋକାନ୍ତର ।

ଏ ସଂସାର ସବୁ, ନାହିଁ ଆନ ଏହା ପରେ
ଏମୂଢ଼ ବିଶ୍ୱାସ ଯେହୁ ପୋଷଇ ଅନ୍ତରେ ।

ବାରମ୍ବାର ମୋର ବଶେ ଆସଇ ସେ ଜନ
ନ ତୁଟେ ତା ଜନ୍ମ ଜରା-ମରଣ-ବନ୍ଧନ ।

ଆଶ୍ଚର୍ଯ୍ୟ ଏ ଆତ୍ମତତ୍ତ୍ୱ କେତେ ଲୋକେ ଜାଣେ
କେବେ ବା ସୁଯୋଗ ପାଏ ଏ ତତ୍ତ୍ୱ ଶ୍ରବଣେ ।

ଶୁଣି ସୁଦ୍ଧା ଅଛି ଅଳ୍ପ ବୁଝନ୍ତି ଏ ତତ୍ତ୍ୱ
ଆତ୍ମାର ଯଥାର୍ଥ ତତ୍ତ୍ୱ ପ୍ରକୃତ ମହତ୍ତ୍ୱ ।

ଆତ୍ମତତ୍ତ୍ୱ ପ୍ରକାଶକ ବକ୍ତା ବିଚକ୍ଷଣ
ଅତ୍ୟନ୍ତ ବିରଳ, ମିଳେ କାହିଁ କଦାଚନ ।

ସୁଯୋଗ୍ୟ କୁଶଳ ଶ୍ରୋତା ଜଗତେ ଦୁର୍ଲ୍ଲଭ
ଲଭି ଉପଦେଶ ପୁଣି ଆତ୍ମ ଅନୁଭବ ।

କୋଟିକେ ଗୋଟିଏ କରେ ବହୁତ ପ୍ରୟାସେ
ଯେ ତତ୍ତ୍ୱ ରହସ୍ୟ ବତ୍ସ ପୁଚ୍ଛିଲ ମୋ ପାଶେ ।

ଇତର ପ୍ରାକୃତ ବୁଦ୍ଧି ଗୁରୁ ଉପଦେଶେ
ଆତ୍ମତତ୍ତ୍ୱ ତନ୍ନଜାଣ ନ ହୁଏ ବିଶେଷେ ।

ଆତ୍ମତତ୍ତ୍ୱ ନାନା ଭାବେ କରି ଯେତୁ ଧ୍ୟାନ
ବୁଦ୍ଧିରୁ ଆତ୍ମାକୁ କେବେ ନ ଦେଖନ୍ତି ଆନ ।

ଏମନ୍ତ ବିଚକ୍ଷଣ ଗୁରୁ ଦେଲେ ଉପଦେଶ
ସଂଶୟ ହୃଦୟେ ଆଉ ନ ରହଇ ଲେଶ ।

ଜଗତର ଭେଦବୁଦ୍ଧି ପାଏ ଅବସାଦ
ସର୍ବତ୍ର ପ୍ରକଟ ଏକ-ବ୍ରହ୍ମ ଆତ୍ମ ଜ୍ଞାନ ।

ଗୁରୁ ଉପଦେଶ ବିନା ତର୍କ ଅନୁମାନେ
ଅଥବା ଇନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷ ପ୍ରମାଣେ ।

ନୁହଇ ଏ ଆତ୍ମତତ୍ତ୍ୱ ମାନବ-ଗୋଚର
ତର୍କେ ବହୁ ଦୂର ଆତ୍ମା ସୂକ୍ଷ୍ମ, ସୂକ୍ଷ୍ମତର ।

ଆତ୍ମତତ୍ତ୍ୱ ଲଭେ ତବ କଳନ୍ତି ଯେ ମତି
ନୁହଇ କେବଳ ତର୍କେ ଏହାର ଉତ୍ପତ୍ତି ।

ବ୍ରହ୍ମ ଆତ୍ମା ଦେହ ମଧ୍ୟ ନାହିଁ ଭେଦାଭେଦ
ଯେ ଅପୂର୍ବ ଜାଣନ୍ତି ଏ ଗୂଢ଼ ସାର ବେଦ ।

ତାଙ୍କ ଉପଦେଶ ଦ୍ୱାରେ ଏହୁ ଅଭିଳାଷ
ପୂର୍ଣ୍ଣ ଆତ୍ମଜ୍ଞାନ ହେବ ଅନ୍ତରେ ପ୍ରକାଶ ।

ପ୍ରିୟତମ ଧନ୍ୟ ତୁମ୍ଭ, ଧନ୍ୟ ସତ୍ୟ ଧୃତି
ନାନାଲୋଭେ ନ ଟଳିଲ, ତୁମ୍ଭେ ଏକା କୃତୀ ।

ନଚିକେତ ! ତୁମ୍ଭ ପରି ତତ୍ତ୍ୱ ଅଭିଳାଷେ
ଶ୍ରଦ୍ଧାବନ୍ତ ଶିଷ୍ୟ ବହୁ ଆସନ୍ତୁ ମୋ ପାଶେ ।

ସ୍ୱର୍ଗଭୋଗ ନୁହେଁ ସତ୍ୟ, ଜାଣଇ ମୁଁ ଭଲେ
ଲଭଇ ମାନବ ଯାହା ନିଜ କର୍ମଫଳେ ।

ବ୍ରହ୍ମପଦ ସତ୍ୟ ସତ୍ୟ ସୁଧ୍ରୁବ ଶାଶ୍ୱତ
ନୁହେଁ ସେ ଅଧ୍ରୁବ କର୍ମ ସାଧନେ ପ୍ରାପତ ।

ନଚିକେତ ସ୍ୱର୍ଗ ଯେ ମୁଁ କଲି ଆରାଧନା
ଇଷ୍ଟକ ଚୟନରେ କରି ସାଦରେ ସ୍ଥାପନା ।

ନଶ୍ୱର ଅନିତ୍ୟ ଦ୍ରବ୍ୟ ଦେଇ ଉପହାର
ମିଳିଛି ସେ ଫଳେ ମତେ ଯମ ଅଧିକାର ।

ମର୍ତ୍ତ୍ୟଭୋଗ ତୁଳନାରେ ଚିର ଯମପଦ
ଯଥାର୍ଥ ନୁହେଁ ଏ ସତ୍ୟ ଶାଶ୍ୱତ ସମ୍ପଦ ।

ନଚିକେତ, ଧୈର୍ଯ୍ୟଗୁଣେ ଦୃଢ଼ କରି ମନ
ବୁଝିଅଛ ଆତ୍ମତତ୍ତ୍ୱ ତୁମ୍ଭେ ବିଚକ୍ଷଣ ।

ଉମାପତ ଯହିଁ ନର କାମନାନିଚୟ
ନିଖିଳ ବିଶ୍ୱର ଯାହା ପରମ ଆଶ୍ରୟ,

ଲଭେ ନର ଆତ୍ମା ଯହିଁ ପରମ ସମ୍ପତ୍ତି
ସଦସତ ଯହିଁ ଜନ୍ମ ଜରା ମୃତ୍ୟୁ ଅନ୍ତ,

ଅଣିମାଦ ଯୁକ୍ତ ମହାବନ୍ଦନୀୟ ପଦ
ଯଜ୍ଞର ଅନନ୍ତ ଫଳେ ମିଳେ ଯେ ସମ୍ପଦ,

ଧୀର ତତ୍ତ୍ୱେ ଏ ସବୁର କରି ସୁବିଚାର
ସଂସାର ସଂକ୍ଷେଗରଣି ଦୂରେ ପରିହର
କରିଅଛ ନଚିକେତା, ଧନ୍ୟ ମହାମନା
ଧନ୍ୟ ତୁମ୍ଭ ସ୍ଥିର ମତି, ଧୀର ଆଲୋଚନା ।

ଯେ ଆତ୍ମା ସାକ୍ଷାତ ଲାଗି ତବ ଅଭିଳାଷ
ଅତି ସୂକ୍ଷ୍ମ ସୁମହତ ସେ ଆତ୍ମା ପ୍ରକାଶ ।
ପୁଣି ରହିଅଛି ଆତ୍ମା ବିଶ୍ୱ ଅଭ୍ୟନ୍ତରେ
ବର୍ତ୍ତମାନ ମାନବର ହୃଦୟ-କନ୍ଦରେ ।
ବୁଦ୍ଧି ଉପଲବ୍‌ଧ ତେଣୁ ବୁଦ୍ଧି ଅଧିଗତ ।

ଅନାଦି ଆଦି କାରଣ ପୁରାଣ ଶାଶ୍ୱତ ।

ଦୁଃସାଧ୍ୟ କଠିନ ଅତି ଆତ୍ମାଦରଶନ
ଦେଖନ୍ତି ଆଧ୍ୟାତ୍ମ ଯୋଗେ ସିଦ୍ଧ ସାଧୁଜନ ।
ଲଭି ଆତ୍ମାଦରଶନ ପ୍ରତ୍ୟକ୍ଷ ପ୍ରଖାତ
ହର୍ଷ ଶୋକ ତେଜି ଧୀର ହୁଏ ଦନ୍ଦ୍ୱାଘାତ ।

ଗୁରୁ ମୁହଁ ଉପଦେଶ ଶୁଣି ମର୍ତ୍ତ୍ୟ ନର
ଜାଣଇ ଆତ୍ମ ର ସୂକ୍ଷ୍ମ ସ୍ୱରୂପ ଗୋଚର ।

ଶରୀରାଦି ଜଡ଼ବସ୍ତୁଁ ଆତ୍ମା ବିଲକ୍ଷଣ
ମହାମୋଦଦାୟୀ ବସ୍ତୁ ଜଗତ ଧାରଣ ।

ଆତ୍ମାର ସ୍ୱରୂପ ତତ୍ତ୍ୱ ବୁଝି ଜ୍ଞାନବନ୍ତ
ଲଭଇ ପରମ ସୁଖ ଅମୃତ ଅନନ୍ତ ।

ନଚିକେତ, ପଣ୍ଡିତର କାମନାରହିତସ୍ତ
ବ୍ରହ୍ମଜ୍ଞାନେ ଅଧିକାରୀ ତୁମ୍ଭେ ନିଃସଂଶୟ ।

ଫିଟିଅଛି ତୁମ୍ଭ ଲାଗି ବ୍ରହ୍ମପୁର ଦ୍ୱାର
ମୋକ୍ଷ ଅଭିମୁଖୀ ତୁମ୍ଭେ କରେ ମୁଁ ବିଚାର ।"

ଶୁଣି ଯମରାଜା ବାଣୀ ବୋଲେ ବିପ୍ରବର,

"କହିଛ ଅନ୍ତକ, ମୋର ପ୍ରଶଂସା ବିସ୍ତର ।

ଯଥାର୍ଥରେ ଯୋଗ୍ୟ ବୋଲି ମତେ ଯେବେ ମଣ
ଯଥାର୍ଥ ମୋ ପ୍ରତି ଦେବ ଯେବେ ସୁପ୍ରସନ୍ନ,

କହ ତେବେ ମତେ ଆତ୍ମ ତତ୍ତ୍ୱ ବିବରଣ
ସର୍ବୋପର ବୋଲି ଯାହା ଜାଣନ୍ତି ଆପଣ ।

ଧର୍ମାଧର୍ମ ବୋଲି ଯାହା ଶାସ୍ତ୍ରେ ନିରୂପିତ
ଅଛଇ ଯେ ଆତ୍ମତତ୍ତ୍ୱ ତହିଁରୁ ଅତୀତ,

କାର୍ଯ୍ୟ-କାରଣରୁ ଯେହୁ ତେହୁ ବିଲକ୍ଷଣ
ଭୂତ ଭବ୍ୟ ବର୍ତ୍ତମାନୁଁ ଯେହୁ ପୁଣି ଅନ୍ୟ

ଯହିଁ ଅତୀତାନ୍ତ ଦେଶ କାଳ ବ୍ୟବହାର
ଭବ ମୁକ୍ତ୍ୟେବଂ, ସେହି ଅମୃତତତ୍ତ୍ୱ ସାର ।”

ବୋଇଲେ ଗମ୍ଭୀର ଯମ ଏସନ ଉତ୍ତରେ,
“ସର୍ବ ବେଦ ଗାଏ ଯାହା ଦୃଢ଼ ସମସ୍ୱରେ ।

ଯେ ପଦ ଗରିମା ଗାଣ ଏକାନ୍ତ ପ୍ରାଣେ,
ଯୋଗମତେ ମାନବର ମୁଖ୍ୟତମ ଲକ୍ଷ ।

ତପ ବ୍ରହ୍ମଚର୍ଯ୍ୟ ଆଦି ବିବିଧ ସାଧନ
ଯେ ପଦ ପ୍ରାପତ ଆଶେ ଆଚରନ୍ତି ଜନ ।

ସଂକ୍ଷେପେ କହୁଛି ଶୁଣ—ସେ ପଦ ‘ଓଁ’ କାର
ଓଁକାର ସାକ୍ଷାତେ ବ୍ରହ୍ମ ପ୍ରତ୍ୟାକାର ।

ଯେ ଉତ୍ତମ ଅଧିକାରୀ ଓଁକାର ସ୍ମରଣେ
ବ୍ରହ୍ମର ପ୍ରତ୍ୟକ୍ଷ ରୂପ ଆପଣାକୁ ମଣେ ।

ଓଁ କାରରେ ବ୍ରହ୍ମବୁଦ୍ଧି କରି ଆରୋପଣ
ଅଳ୍ପ ଅଧିକାରୀ ଜନ କରିବ ଭଜନ ।

ଓଁକାର ପରମ ବ୍ରହ୍ମ ଓଁକାର ଅପର,
ବୁଝିଣ ଏ ତତ୍ତ୍ୱ ଯେହୁ ପୂଜେ ଏ ଅକ୍ଷର,

ପୂରଣ ହୁଅଇ ତାର କାମନାନିଚୟ
ଆଉ ନାହିଁ ପୁଣି ଜନ୍ମ-ଜରା-ମୃତ୍ୟୁଭୟ ।

ଅପର ପୂଜକେ ନର ଯାଏ ବ୍ରହ୍ମଲୋକେ
ପଡ଼େ ନାହିଁ ଆଉ କେବେ ଭବ-ଦୁଃଖଶୋକେ !

ପର ଉପାସନେ ହୁଏ ସ୍ୱୟଂ ବ୍ରହ୍ମରୂପ
ଛିନ୍ନେ ଯେବେ ମୋହଜାଲ, ଟୁଟେ ତମସ୍ତୂପ ।

ବ୍ରହ୍ମପ୍ରାପ୍ତି ସାଧନାର ମୁଖ୍ୟ ଆଲମ୍ବନ
ଓଁକାରେ ରଖଇ ମନ ସତତ ଯେ ଜନ ।

ହୁଏ ବ୍ରହ୍ମରୂପ ଲଭି ପୂର୍ଣ୍ଣ ବ୍ରହ୍ମଜ୍ଞାନ
କିବା ବ୍ରହ୍ମଲୋକ ପାଏ ସମ ପୂଜ୍ୟ ସ୍ଥାନ ।

ଆତ୍ମଜ୍ଞାନ ଲଭେ ଯେବେ ବିଶ୍ୱ ବ୍ରହ୍ମମୟ
ନାହିଁ ଜନ୍ମ, ନାହିଁ ମୃତ୍ୟୁ, ନାହିଁ ବୃଦ୍ଧି-କ୍ଷୟ ।

ନାହିଁ ଅନ୍ୟ ହେତୁ ଯହିଁ ଆତ୍ମାର ସମ୍ଭବ
ନୁହଇ ଆତ୍ମାରୁ ଅନ୍ୟ ବସ୍ତୁ ସମୁଦ୍ଭବ ।

ଜନ୍ମ ବିରହିତ ଆତ୍ମା ନିତ୍ୟ ସନାତନ
ନିର୍ବିକାର ଶାଶ୍ୱତ ସେ ସର୍ବଦା ନୂତନ ।

ବିଶ୍ୱ ବସ୍ତୁ ରହେ, ରହେ, ଆତ୍ମା ସ୍ୱପ୍ରକାଶ
ଶରୀର ବିନାଶେ ଆତ୍ମା ପାଏ ନାହିଁ ନାଶ

ଆତ୍ମଜ୍ଞାନହୀନ ଆତ୍ମା ସ୍ୱରୂପ ନ ଜାଣେ
ଜଡ଼ ଶରୀରକୁ ଆତ୍ମାରୂପେ ପରମାଣେ

ଏ ସମ ବିମୂଢ଼ ଯେବେ ଆନ ମୂଢ଼େ ହାଣେ
ଏକ 'ହତ୍ୟା କଲି' ଆନ 'ହତ ହେଲି' ଜାଣେ

ଆପଣାକୁ ନ ଚିହ୍ନନ୍ତି ସେ ବେନି ଅଜ୍ଞାନେ,
ହୁଏ ନାହିଁ ଆତ୍ମା ହତ କିବା ନାହିଁ ହାଣେ

ସୂକ୍ଷ୍ମତମ ପରମାଣୁ ତହିଁ ସୂକ୍ଷ୍ମାକାର
ବୃହତ୍ତମୁଁ ବୃହତ୍ତମ ଆତ୍ମାର ବିସ୍ତାର ।

ପ୍ରାଣିଗଣ ହୃଦେ ଆତ୍ମା ନହିତ ନଭୃତ
ଗିରି ଦରି ଅଭ୍ୟନ୍ତରେ ଦର୍ପଣ ଯେମନ୍ତ ।

ଜ୍ଞାନ ଧ୍ୟାନେ ପରପୂତ ଯାହାର ଅନ୍ତର
ଦୁଃଖ ଶୋକ ଅତିକ୍ରମ କରିଛି ଯେ ନର,

ଆତ୍ମାର ମହିମା ସେହି ଦେଖେ, ଉପଭୋଗେ
ପ୍ରସନ୍ନ ଇନ୍ଦ୍ରିୟ ମନ ଶୁଦ୍ଧ ବୁଦ୍ଧି ଯୋଗେ ।

ଅଚଳ ସୃଷ୍ଟିର ଆତ୍ମା କିନ୍ତୁ ଭ୍ରମେ ଦୂରେ
କାର୍ଯ୍ୟହୀନ ଗତିହୀନ ଯାଏ ଭିନ୍ନ ପୁରେ ।

ସ୍ଥିତି ଗତି ଆଦି ନାନା ଭାବ ବିପରୀତ
ଏକାଧାରେ ଏକାବେଳେ ଯହିଁ ସମନ୍ୱିତ ।

ସେ ଆତ୍ମାର ତତ୍ତ୍ୱ ଅତି ଅଭେଦ୍ୟ ଦୁସ୍ତର
ମୋ ବିନା ନୁହଇ ଅନ୍ୟ କାହାର ଗୋଚର ।

ଅନତ୍ୟ ନଶ୍ୱର ପ୍ରାଣୀ ଦେହେ ବିରାଜିତ
ନାହିଁ ରୂପ ନାହିଁ ତନୁ ବିକାର ବର୍ଜିତ ।

ଦେଶକାଳ ଗୁଣେ ନୁହେ ଆତ୍ମା ପରିଛିନ୍ନ
ସର୍ବବ୍ୟାପୀ ସର୍ବେଶ୍ୱର ସର୍ବାପର ଭିନ୍ନ ।

ବୁଝେଁ ଏହି ଆତ୍ମାତତ୍ତ୍ୱ ସୁଧୀର ସୁଜ୍ଞାନୀ
ତରେ ଶୋକ, ଆପଣାକୁ ଆତ୍ମା ବୋଲି ଜାଣି ।

ମିଳେ ନାହିଁ ଆତ୍ମଜ୍ଞାନ ଶାସ୍ତ୍ର ଅଧ୍ୟୟନେ
ଶାସ୍ତ୍ରାର୍ଥ ଶ୍ରବଣେ ଅବା କେବଳ ଧାରଣେ ।

ଆତ୍ମାର ସ୍ୱରୂପ ଜ୍ଞାନେ କରେ ଯେ ସାଧନା
ଦୂରେ ପରିହରି ହୃଦୁଁ ସକଳ କାମନା;

ନିଜ ପରମାର୍ଥ ରୂପ ସେ ସାଧକ ପାଶେ
ମୋହ ଅନ୍ଧକାର ନାଶି ଆତ୍ମା ପରକାଶେ,

ହୁଏ ତାର ଆତ୍ମଲାଭ, ଆପଣାକୁ ଆପେ
ଦେଖାଇ ସେ ଆତ୍ମ ରୂପ, ନ ପଡ଼େ ବିତାପେ ।

ଦୁଷ୍କର୍ମ ପାପଠୁଁ ନୁହେ ଯେ ବିରତ
ଶିକ୍ଷାବଳେ ନୁହେ ଯାର ଇନ୍ଦ୍ରିୟ ସଂଯତ ।

ନୁହେ ଯାର ଚିତ୍ତ ଦୃଢ଼ ଏକାଗ୍ର ନିଶ୍ଚଳ
ଛେଳ ନାହିଁ ମନ ଯାର ବିଷୟ ପଟଳ,

ବୈରାଗ୍ୟ ନିର୍ମଳ ଶାନ୍ତ ହୋଇ ନାହିଁ ମତି
ହୁଏ ନାହିଁ ତାର କେବେ ଆତ୍ମା ପରାପତି ।

ନିତ୍ୟ ସମାହିତ ଶାନ୍ତ ହୃଷ୍ଟ ସଂଯତ
ଲଭେ ବ୍ରହ୍ମଜ୍ଞାନ ବଳେ ଗୂଢ଼ ଆତ୍ମତତ୍ତ୍ୱ ।

ବ୍ରାହ୍ମଣ କ୍ଷତ୍ରିୟ ଆଦି ଉତ୍ତମ ମଧ୍ୟମ
ଅଛନ୍ତି ଜଗତେ ଯେତେ ସ୍ଥାବର ଜଙ୍ଗମ ।

ଆତ୍ମାର ଆଧାର ସର୍ବେ ଆତ୍ମାର ଅଧୀନ
ଆତ୍ମା ଅଭ୍ୟନ୍ତରେ [illegible] ଆତ୍ମାରେ ବିଲୀନ ।

କାଳେ ମୃତ୍ୟୁ ଭବେ ଯେତୁ ସକଳ ବିନାଶେ
ଲଭେ ମୃତ୍ୟୁ ଦଣ୍ଡେ ଯେବେ ଆତ୍ମାର ପରଶେ ।

ଆତ୍ମା ଅନ୍ତର୍ହିତ ଦୃଷ୍ଟି ସଞ୍ଚିତ ପ୍ରଳୟ
ଲୋକେ ଯାହା ବିପର୍ଯ୍ୟୟ ନୁହେ ତା ବିଲୟ ।

ଏମନ ସ୍ୱରୂପ ଆତ୍ମା ସର୍ବ ବିଦ୍ୟମାନ
ଦୁଃସାଧ୍ୟ ସାଧନେ ଲଭ୍ୟ ସେ ନିଗୂଢ଼ ସ୍ଥାନ ।

ଇତର ଜନର ନୁହେ ସହଜ ଗୋଚର
ନଚିକେତ, ଜାଣି ଏହା ମନେ ହେଲୁ ଧର ।"



## ତୃତୀୟ ବଲ୍ଲୀ

"ଶୁଣ ନଚିକେତ, ଜୀବ ପରମ ପ୍ରଭେଦ
ଭେଦିଲେ ଯେ ତତ୍ତ୍ୱ ଆଉ ନ ରହିବ ଖେଦ ।

ପରମାତ୍ମା ଜୀବଆତ୍ମା ଏକତ୍ର ଉଭୟେ
ପ୍ରବିଷ୍ଟ ମାନବ ବୁଦ୍ଧି-ଗୂଢ଼-ଗୁହାଶୟେ ।

ଉନ୍ନତ ହୃଦୟାକାଶେ ବେନଙ୍କ ପ୍ରକାଶ
ଏକ ଭୁଞ୍ଜେ, ଅନ କରେ ଚିର ଉପବାସ ।

ସୁକୃତ ଦୁଷ୍କୃତ ଆଦି କର୍ମ ଫଳାଫଳ
ଦେହସ୍ଥ ଜୀବ ଭୋଗେ ଦେଖେ ପରମ କେବଳ ।

ଅନ୍ଧକାର ଜୀବ; କିନ୍ତୁ ଆଲୋକ ପରମ
ବ୍ରହ୍ମଜ୍ଞାନୀ କୁହନ୍ତି ଏ ଭେଦାଭେଦ ମର୍ମ ।

ଆଉରି ଯେ ପଞ୍ଚଅଗ୍ନି କରନ୍ତି ଅର୍ଚ୍ଚନା
କରନ୍ତି ଯେ ନଚିକେତା ଅଗ୍ନି ଆରାଧନା

ସେ ସକଳ ଉପାସକ କର୍ମନିଷ୍ଠ ଜନ
ଜାଣନ୍ତି ପରାପର ପ୍ରଭେଦ ଏସନ ।

ପରାପର ବ୍ରହ୍ମଜ୍ଞାନ ଦୁଃସାଧ୍ୟ ନିଶ୍ଚିତ
ନୁହେଁ କିନ୍ତୁ ମାନବର ସାଧନା ଅଜ୍ଞାତ ।

ଆରାଧି ଯେ ନଚିକେତା ଅଗ୍ନି ଯଜମାନ
ଦୁଃଖ-ସିନ୍ଧୁ ପାରେ ଲଭେ ମହାପୁଣ୍ୟ ସ୍ଥାନ

ସେ ଅଗ୍ନିର ତତ୍ତ୍ୱ ବୁଝି ଜନ୍ମିତ ତପୂନେ
ସମର୍ଥ ସକଳେ ଆମ୍ଭେ ରଖ ଏହା ମନେ

ଭବାର୍ଣ୍ଣବ ଆର ପାରେ ନାହିଁ ଯହିଁ ଭୟ-
ଯାଏ ଜ୍ଞାନୀଜନ ଲଭି ଯେ ବ୍ରହ୍ମ ଆଶ୍ରୟ ।

ସେ ପର ଅକ୍ଷର ବ୍ରହ୍ମତତ୍ତ୍ୱ ଅଭିଜ୍ଞାନେ
ସକ୍ଷମ ହେ ନଚିକେତ, ସର୍ବେ ଆମ୍ଭେମାନେ ।

ଜୀବାତ୍ମା ଅପର ବ୍ରହ୍ମ ମିଳେ କର୍ମଫଳେ
ଲଭଇ ପରମବ୍ରହ୍ମ ଜ୍ଞାନୀ ଜ୍ଞାନବଳେ ।

ଏ ନର ଶରୀର ଏକ ଅପୂର୍ବ ସ୍ୟନ୍ଦନ
ଚକ୍ଷୁ ଆଦି ପଞ୍ଚ ଅଶ୍ୱ ଏଥିରେ ବାହନ ।

ଜୀବ ରଥୀ, ପୁଣି ବୁଦ୍ଧି ସାରଥି ଏ ରଥେ
ଦଶେନ୍ଦ୍ରି ଅଶ୍ୱେ ରୂପ ରସ ଆଦି ପଥେ ।

ମନ-ଲଗାମକୁ ଟାଣି ସତର୍କ ସାରଥି
ନିରୋଧେ ଚଞ୍ଚଳ ଅଶ୍ୱ ଉଚ୍ଛୃଙ୍ଖଳ ଗତି ।

ଦେହ ମନ ଇନ୍ଦ୍ରିୟାଦି ଉପାଧି ଜଡ଼ିତ
ଜୀବ ଭୋଗେ ସୁଖ ଦୁଃଖ କହନ୍ତି ପଣ୍ଡିତ ।

ସାରଥି ଲଗାମ ସଦା ନ ଧରିଲେ କସି
ଅଳପେ କୋହଳ ଯେବେ ହୁଏ ମନ-ରସି ।

ଦୁର୍ଦ୍ଦାନ୍ତ ତୁରଙ୍ଗ ସମ ଇନ୍ଦ୍ରିୟ ସକଳ
ନ ରହି ସାରଥି ବଶେ ହୁଏ ଉଚ୍ଛୃଙ୍ଖଳ

ଅବିଚାରିତ ଜ୍ଞାନ ହୀନେ ଘଟିଲେ ଏ ଗତି
ଅଶ୍ୱ ସନ୍ତଳନେ ମୃତ୍ୟୁ ଯେସନ ସାରଥି ।

ସେହି ଜ୍ଞାନବନ୍ତ ଯାର ସୁସଂଯତ ମତି
ବୁଝଇ ସେହି ତା ହିତ ସୁଚିନ୍ତ ଦୁର୍ଗତି ।

ଇନ୍ଦ୍ରିୟ ସକଳ ତାର ସଦା ନିଜ ବଶ
ପ୍ରବୀଣ ସାରଥି ବଶେ ଯଥା ଶିକ୍ଷି ଅଶ୍ୱ ।

ହୃଦେ ଯେହୁ ସୁବିବେକ ଶୁଚି ଜ୍ଞାନବନ୍ତ
ହୃଦେ ମନ ଯାର ସଦା ବୁଦ୍ଧି ଅଧିଗତ ।

ସେ ପରମ ପଦେ ପ୍ରାପ୍ତି ନ ହୁଏ ତାହାର
ଜନ୍ମ-ମୃତ୍ୟୁ ମଧ୍ୟ ଭବେ ଆସେ ବାରବାର ।

ଜ୍ଞାନବନ୍ତ ଶୁଚିବନ୍ତ ସଯତ ମାନସ
ଅନ୍ତରୁ ଛୁଟିଛି ଯାର ଅଜ୍ଞାନ-କଳୁଷ,

ସେ ପରମପଦ ଏକା ପାଏ ସେହି ରଥୀ
ନାହିଁ ପଡ଼ୁଁ ଜନ୍ମାନ୍ତର ଅବା ଦୁର୍ଯ୍ୟୋଗେ ।

ସୁବିବେକ ବୁଦ୍ଧି ଯାର ସାରଥି ନିରତ
ମାନସ ପ୍ରଗ୍ରହ ଯାର ଆପଣା ଆୟତ୍ତ,

ସେହି ଏକା ଭବ-ପଥ ସୀମା ପାରେ ଯାଏ
ପରମାତ୍ମା ବିଷ୍ଣୁପଦ ସେହି ଏକା ପାଏ ।

ରୂପ ରସ ଆଦି ଯେତେ ସମ୍ଭୋଗ୍ୟ ବିଷୟ
ସୁଜାଣ କୁହନ୍ତି ଲକ୍ଷ୍ୟ ଇନ୍ଦ୍ରିୟ ଅଶ୍ୱୟ ।

ଇନ୍ଦ୍ରିୟର ଅର୍ଥ ଯେଣୁ ବିଷୟ ନିଚୟ
ସେ ସବୁ ଇନ୍ଦ୍ରିୟୁଁ ବଳେ ଶ୍ରେଷ୍ଠ ଅତିଶୟ ।

ଇନ୍ଦ୍ରିୟ ବିଷୟ ଭଣି ମାନସ ଗୋଚର
ଇନ୍ଦ୍ରିୟାର୍ଥୁଁ ବଳି ତେଣୁ ମନ ଶ୍ରେଷ୍ଠତର ।

ଇନ୍ଦ୍ରିୟ ସାହାଯ୍ୟେ ମନ ଯୋଗାଇ ବିଷୟ
ବିଷୟ ସମ୍ଭୋଗେ କରୁ ନାହିଁ ତା ନିଶ୍ଚୟ ।

ବୁଦ୍ଧି ପାଶେ ମନ କରେ ବିଷୟ ବହନ
ଭଲ ମନ୍ଦ ବୁଝି ବୁଦ୍ଧି କରେ ତା ଗ୍ରହଣ ।

ମନ ଠାରୁଁ ବୁଦ୍ଧି ତେଣୁ ଅଧିକ ପ୍ରଧାନ
ବୁଦ୍ଧି ପରେ ଦେହସ୍ୱାମୀ ଜୀବ ବିଦ୍ୟମାନ ।

ଜୀବାତ୍ମା ଇନ୍ଦ୍ରିୟ ଆଦି ସଂଯୋଗର ସାର
ମନ ବୁଦ୍ଧି ଇନ୍ଦ୍ରିୟାଦି ପାର ପରସ୍ପର ।

ହିରଣ୍ୟଗର୍ଭ ସେ ସର୍ବ ବୁଦ୍ଧି ମୂଳୀଭୂତ
ମହତ ଜୀବାତ୍ମା ଆଦ୍ୟ ପ୍ରକୃତି ସମ୍ଭୂତ ।

ମହତ ଜୀବାତ୍ମା ଠାରୁଁ ବଳି ମହତ୍ତର
ପ୍ରକୃତି ଯାହାର ନାମ ରୂପ ଅଗୋଚର ।

ଅବ୍ୟକ୍ତ ପ୍ରକୃତି ନିତ୍ୟ ଋଷିଙ୍କ କଥିତ
ଓତଃପ୍ରୋତ ଭାବେ ସୃଷ୍ଟି ପରାତ୍ମା ସହିତ ।

ସୂକ୍ଷ୍ମ ବଟବୀଜ ଦେହେ ପ୍ରଚ୍ଛନ୍ନ ଯେ ମତ
ଜଡ଼ିତ ବିଶାଳ ଦ୍ରୁମ ଅଙ୍କୁର ସହିତ ।

ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ପ୍ରଧାନ
ପରାତ୍ମା ଚିନ୍ମୟ ରୂପ ଅନାଦି ନିଦାନ
ପୁରୁଷ ଉପରେ ଆଉ ନାହିଁ ପରସ୍ଥାନ
ସୃଷ୍ଟିର ମହତ୍ତ୍ୱ ଆତ୍ମାର ଅବସାନ ।

ଏହା ହିଁ ସଂସାରି ଜୀବ ପରମ ଆଶ୍ରୟ
ନାହିଁ ଯହୁଁ କେବେ ଆଉ ପ୍ରତ୍ୟାଗମ ଭୟ ।

ପରମାତ୍ମା ସର୍ବଭୂତେ ଗୁପ୍ତ ବିଦ୍ୟମାନ
ଭୂଗର୍ଭେ ଉଜ୍ଜ୍ୱଳ-ରତ୍ନ ସମ୍ପଦ ସମାନ ।

ମୃତ୍ତିକାର ଆବରଣେ ଥିଲେ ରତ୍ନରାଶି
ନ ଦିଶଇ ଜନନେତ୍ରେ ଯେସନେ କଦାପି ।

ଇନ୍ଦ୍ରିୟ ବିଷୟ ମୋହେ ଆବୃତ୍ତ ଚେତନ
ନ ଦେଖନ୍ତି ପରମାତ୍ମା ରୂପ ସର୍ବଜନ ।
ସ୍ଥୂଳୁଁ ସୂକ୍ଷ୍ମତର, ତହୁଁ କ୍ରମେ ସୂକ୍ଷ୍ମତମ
ଇନ୍ଦ୍ରିୟରୁ କ୍ରମେ ସେଥୁ ଭେଦନ୍ତି ପରମ ।
ସେଣୁ ଯୋଗସିଦ୍ଧ ଧୀର ସୂକ୍ଷ୍ମଦର୍ଶୀ ଜନ
ସୂକ୍ଷ୍ମ ବୁଦ୍ଧି ବଳେ ଆତ୍ମା କରନ୍ତି ଦର୍ଶନ ।
ଇନ୍ଦ୍ରିୟ, ଇନ୍ଦ୍ରିୟ-ଅର୍ଥ, ମନ, ବୁଦ୍ଧି, ଆତ
ଅବ୍ୟକ୍ତ ପୁରୁଷ କ୍ରମେ ସୂକ୍ଷ୍ମକୁ ବୁଝିବ ।

ଏଥୁଁ ଏକ ସୂକ୍ଷ୍ମତର ଶେଷେ ସୂକ୍ଷ୍ମତମ
ପୁରୁଷ ଅନ୍ତିମ ନିଷ୍ଠା ପ୍ରଧାନ ପରମ ।

ସ୍ଥୂଳର କାରଣ ସୂକ୍ଷ୍ମ, ସୂକ୍ଷ୍ମୁଁ ସ୍ଥୂଳ ଜାତ
ଏ ବିଷୟେ ହୁଏ ସୃଷ୍ଟି ତତ୍ତ୍ୱ ପ୍ରତିଭାତ ।
ବୁଝି ପ୍ରାଜ୍ଞଜନ ଏହି ସୃଷ୍ଟି ତତ୍ତ୍ୱଗତ
ସାଧିଲେ ସଂଯମ ହୁଏ ପରମ ପ୍ରାପତ ।
ଇନ୍ଦ୍ରିୟ ସକଳ କର ମନ ଅଧିଗତ
ବୁଦ୍ଧି ଶାସନେ ମନ ରଖିବ ସଂଯତ ।

ମହତ କାରଣ ଗର୍ଭେ ଜୀବାତ୍ମା ଶାସନେ
ନିବେଶିବ ବୁଦ୍ଧି ଯଥା ଶାନ୍ତ ବିଷୟେ ।
ନିବେଶିବ ଅନ୍ତେ ପୁଣି ଶୁଦ୍ଧ ଆତ୍ମଜ୍ଞାନେ
ଶାନ୍ତ ପରମାତ୍ମା ତହିଁ ଯତ୍ନ ଯୋଗଧ୍ୟାନେ ।

ପ୍ରକାଶିବ ଯେବେ ଶୁଦ୍ଧ ଜ୍ଞାନ ସୁଦର୍ଶନ
ତବେ ଦିଶିବ ଏକ ଆତ୍ମା ଚରାଚର ।

ଛୁଟିବ ଅଶେଷ ମୋହ ଫୁଟିବ ସଦ୍‌ଜ୍ଞାନ
ଦେହ ନାମରୂପ ହିତ୍ୱା ହେବ ତିରୋଧାନ ।

ଉଠ ହେ ମୁମୁକ୍ଷୁ ଯେବେ ଜାଗ ହେ ସତ୍ୱର
ହର ଘୋର ମୋହ ନିଦ୍ରା ଦୂରେ ପରିହର ।

ବରେଣ୍ୟ ବ୍ରହ୍ମଜ୍ଞ ଗୁରୁ ପଦାଶ୍ରୟେ ଆସି
ପ୍ରବୁଦ୍ଧ ଜାଗ୍ରତ ହୁଅ ହେ ମୋକ୍ଷପ୍ରାର୍ଥି !

କହନ୍ତି ବିଜ୍ଞାନଦର୍ଶୀ କ୍ଷୁରଧାର ସମ
ବ୍ରହ୍ମଜ୍ଞାନ ମାର୍ଗ ଏହୁ ଶାଣିତ ଦୁର୍ଗମ ।

ସୁଦୃଢ଼ ସାଧନା ବିନା ଅସାଧ୍ୟ ଅତ୍ୟୟ
ଉଠ ନର ଜାଗ ଲଭ ସିଦ୍ଧି ସୁନିଶ୍ଚୟ ।

ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ବିବର୍ଜିତ
ଇନ୍ଦ୍ରିୟ ଅଜ୍ଞେୟ ନିତ୍ୟ ଆଦ୍ୟନ୍ତ ରହିତ ।

ନାହିଁ ଯାର ଜନ୍ମ ନାଶ, ଚିର ନିରାମୟ
ନାହିଁ ରୂପାନ୍ତର, ଧ୍ରୁବ, ଅବ୍ୟୟ ଅକ୍ଷୟ ।

ମହତ ବୁଦ୍ଧିରୁ ଯେହୁ ଭିନ୍ନ ମହତ୍ତର
ଉଦ୍ଭାସେ ଯେ ସାକ୍ଷୀରୂପେ ନିଖିଳ ଅନ୍ତର ।

ଶ୍ରବଣ ମନନ ଧ୍ୟାନେ କର ସୁନିଶ୍ଚୟ
ଦେଖିଲେ ଥରେ ସେ ବ୍ରହ୍ମସ୍ୱରୂପ ଚିନ୍ମୟ ।

ମୃତ୍ୟୁ ମୁଖୁଁ ଲଭେ ଜୀବ ଚିର ଅବ୍ୟାହତି
ଅବିଦ୍ୟା ପଟଳ ଛୁଟେ ମିଳେ ମୋକ୍ଷଗତି ।"

ଋଷିପୁତ୍ର ନଚିକେତେ ଅନ୍ତକ କଥିତ
ସୁପବିତ୍ର ସନାତନ ଏ ଗ୍ରନ୍ଥ ଚରିତ ।

ଯେ ମେଧାବୀ ଶ୍ରଦ୍ଧାଯୁକ୍ତେ ଶୁଣେ ବା ଶୁଣାଏ
ବ୍ରହ୍ମରୂପେ ବ୍ରହ୍ମଲୋକେ ନିତ୍ୟ ପୂଜା ପାଏ ।

ପରମ ନିଗୂଢ଼ ଏହୁ ତତ୍ତ୍ୱ ସୁମହତ
ଶ୍ରଦ୍ଧାରେ ଯେ ଜନ ମନ କରି ସୁସଂଯତ,

ବ୍ରାହ୍ମଣ ସମାଜେ ପଢ଼ି କରିବ ବ୍ୟାଖ୍ୟାନ
ଶ୍ରାଦ୍ଧକାଳେ ଭଣିବ ବା ଏ ପୁଣ୍ୟ ଉପାଖ୍ୟାନ,

ସେ ସୁକୃତେ ସୁଦସ୍ତର ଫଳ ହୁଏ ପ୍ରାପ୍ତ
କଠୋପନିଷଦ ଆଦ୍ୟ ଅଧ୍ୟାୟ ସମାପ୍ତ ।



# ଦ୍ୱିତୀୟ ଅଧ୍ୟାୟ

## ପ୍ରଥମ ବଲ୍ଲୀ

ସ୍ୱୟମ୍ଭୂ ଯେକାଳେ କଲେ ଜଗତ କଳ୍ପନା
ବାହ୍ୟ ଅଭିମୁଖେ କଲେ ଇନ୍ଦ୍ରିୟ ରଚନା !

ହୋଇଛନ୍ତି ଇନ୍ଦ୍ରିୟଗଣ ପ୍ରଥମୁ ଆହତ
ତେଣୁ ବାହ୍ୟ ବସ୍ତୁ ମୁଖେ ଧାଏଁ ଅବିରତ ।

ବାହ୍ୟ ବିଷୟକୁ ଜୀବ ଦେଖେ ଅନୁକ୍ଷଣ
ନ ଦେଖଇ ଅନ୍ତରାତ୍ମା ଫିରାଇ ନୟନ ।

ଅମୃତତ୍ୱ ଅଭିଳାଷୀ କେହ୍ୱ ଅବା ଧୀର
ବିଷୟୁ ଫେରାଇ ନେତ୍ର କରି ମନ ସ୍ଥିର ।

ନିରୋଧି ଇନ୍ଦ୍ରିୟଗଣେ ହୋଇ ଏକ ଲୟ
ଦେଖନ୍ତି ଅନ୍ତରେ ଆତ୍ମା ଚିଦାନନ୍ଦମୟ ।

ଚପଳ ବାଳକମତି ଅବିବେକୀ ନରେ
ଅନୁରାଗ ପ୍ରକାଶନ୍ତି ବାହ୍ୟ ବିଷୟରେ ।

ସୁଖସ୍ପୃହା ଧନ ମାନ ବନିତା ବିଳାସ
ଏ ଆଦି ଅନିତ୍ୟ କାମେ କରନ୍ତି ପ୍ରୟାସ ।

ସୁବିସ୍ତୀର୍ଣ୍ଣ ମୃତ୍ୟୁପାଶେ ହୁଅନ୍ତି ସେ ବନ୍ଦୀ
ଅବିଦ୍ୟା-ଅନ୍ଧାରେ ବୃଥା କାମକର୍ମେ ଛନ୍ଦି ।

ଜନ୍ମ ମୃତ୍ୟୁ ଜରା ବ୍ୟାଧି ଯନ୍ତ୍ରଣା ଅପାର
ଲଭନ୍ତି ଏ ମର୍ତ୍ତ୍ୟଧାମେ ଆସି ବାରମ୍ବାର ।

ବିବେକୀ ପୁରୁଷ ତେଣୁ ତେଜି ଭୋଗରାଶି
ଅମୃତତ୍ତ୍ୱ ଲାଗି ହୁଏ ଏକାନ୍ତ ପ୍ରୟାସୀ ।

ଜାଣନ୍ତି ସେ ସ୍ୱର୍ଗେ ନାହିଁ ପ୍ରକୃତ ଅମୃତ
ପୁଣ୍ୟକ୍ଷୟେ ସ୍ୱର୍ଗୁ ଜୀବ ହୁଏ ଭ୍ରଷ୍ଟୀଭୂତ ।

ଆତ୍ମଜ୍ଞାନେ ମିଳେ ଏକା ଚିର ଅମୃତତ୍ତ୍ୱ
ବୁଝି ଜ୍ଞାନୀଜନ ଏହା ସତ୍ୟ ସାରତତ୍ତ୍ୱ ।

ଆତ୍ମା ଧ୍ରୁବ ଅନ୍ୟ ସବୁ ଅଧ୍ରୁବ ଜଗତେ
ନିର୍ଦ୍ଧାର୍ଯ୍ୟ ଜାଣି ଏ ତଥ୍ୟ ନିଜ ହୃଦଗତେ

ଅନିତ୍ୟ ବିଷୟେ କେବେ ନ କରେ କାମନା
ଲୋଡ଼େ ନାହିଁ ପୁତ୍ର ବିତ୍ତ ଲୋକ ସମ୍ଭାବନା ।

ବିଜ୍ଞାନ ସ୍ୱରୂପ ଆତ୍ମା, ଆତ୍ମାର ପ୍ରେରଣେ
ଜାଣନ୍ତି ବିଷୟରାଶି ଅନୁଭବେ ଜନେ ।

ମୈଥୁନ ସମ୍ଭୂତ ଅଙ୍ଗ ପୁଲକ ପରଶ
ଜିହ୍ୱା ଅନୁଭୂତ ସ୍ନିଗ୍ଧ ସୁମଧୁର ରସ ।

ଚକ୍ଷୁ ପ୍ରିୟ ରୂପରାଶି ନୟନମୋହନ
ଶ୍ରୁତି ସୁଲଳିତ ବେଦ କର୍ଣ୍ଣ ରସାୟନ ।

ସୁରଭି ନାସିକା ମୋଦ ସୁଗନ୍ଧ ସମ୍ଭାର
ଇନ୍ଦ୍ରିୟ ବିଷୟ ଏ ଯେ ବିବିଧ ପ୍ରକାର ।

ଆତ୍ମାର ପ୍ରଭାବେ ଲୋକ ହୁଏ ଅବଗତ
ଆତ୍ମଜ୍ଞାନେ ପ୍ରକାଶେ ଏ ନିଖିଳ ଜଗତ ।

ଆତ୍ମା ଅଧିଗମ୍ୟେ ମୋକ୍ଷ ଲଭିଲେ ମାନବ
ସକଳ ଜ୍ଞାତବ୍ୟ ତାର ହୁଏ ଅନୁଭବ ।

ଏହି ସେ ସର୍ବଜ୍ଞ ଆତ୍ମା ପରମ ଆଶ୍ରୟ
ଜାଣି ନଚିକେତା ମନୁଁ ଛୁଟାଅ ସଂଶୟ ।

ହୁଏ ଯେତେ ଅନୁଭୂତି ସ୍ୱପ୍ନ ଜାଗରଣେ
ଜାଣେ ସେ ସମସ୍ତ ଲୋକ ଆତ୍ମାର ପ୍ରେରଣେ ।

ମହତ ମହେଶ ଆତ୍ମା ସର୍ବ ମୂଳାଧାର ।
ଜାଣି ଏହା ତରେ ଧୀର ଶୋକ-ପାରାବାର ।

ଜୀବାତ୍ମା ସକଳ ଘଟେ ଛନ୍ତି ବିଦ୍ୟମାନ
ଭୂତ ଭବିଷ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ ।

ଭୋଗନ୍ତି ସେ ସୁଖ ଦୁଃଖ କର୍ମଫଳ ନିତି
ଜାଣି ଏହା ଦେଖେ ଯେହୁ ହୃଦେ ତାଙ୍କ ସ୍ଥିତି ।

ବ୍ରହ୍ମଜ୍ଞାନ ଫଳେ ତାର ଛୁଟେ ସର୍ବ ଭୟ
ଜଗତେ ସର୍ବଭୂତ ସେହୁ ଦେଖେ ବ୍ରହ୍ମମୟ ।

ଦ୍ୱୈତଜ୍ଞାନେ ଭୟ ପାଏ ଏକ ତହୁଁ ଆନ
ଭାଙ୍ଗେ ଭୟ ଉପୁଜିଲେ ବ୍ରହ୍ମାତ୍ମୈକ ଜ୍ଞାନ

ଏହି ସେହି ଆତ୍ମତତ୍ତ୍ୱ ଦେବେ ଅଗୋଚର
ବୁଝି ନଚିକେତ, ଏହା ଦୃଢ଼େ ହୃଦେ ଧର

ଏ ଜଗତ ସୃଷ୍ଟି ଯେବେ ନ ଥିଲା ପ୍ରକାଶ
ଥିଲା ନାହିଁ ଜଳ ସ୍ଥଳ ପବନ ଆକାଶ ।

ଯୋଗମଗ୍ନ ଯେବେ ଏକା ବ୍ରହ୍ମ ଜ୍ଞାନମୟ
ସର୍ବତହୁଁ ହେଲା ଯାର ପ୍ରଥମ ଉଦୟ ।

ହିରଣ୍ୟଗର୍ଭ ସେ ଆଦ୍ୟ ସ୍ୱୟମ୍ଭୂ ସମ୍ଭୂତ
ଯାର ପରେ ସୃଷ୍ଟି ହୁଏ ପଞ୍ଚ ମହାଭୂତ ।

ହିରଣ୍ୟଗର୍ଭାଖ୍ୟ ସେହି ପୁରୁଷ ପ୍ରଧାନ
ସର୍ବ ପ୍ରାଣୀ ହୃଦେ ପଶି କଲେ ଅଧିଷ୍ଠାନ ।

ଲଭି ପଞ୍ଚଭୂତମୟ ଦେହାଦି ସଂଯୋଗ
କରନ୍ତି ସେ ଶବ୍ଦ ଆଦି ବିଷୟ ସମ୍ଭୋଗ ।

ଦେଖେ ଯେହୁ ଏ ପୁରୁଷେ ନିତ୍ୟ ହୃଦାକାଶେ
ତା ନେତ୍ରେ ପରମବ୍ରହ୍ମ ସର୍ବଥ ଉଦ୍ଭାସେ ।

ହିରଣ୍ୟଗର୍ଭ ସେ ବ୍ରହ୍ମ ସମ୍ଭବ ପ୍ରଥମ
ତହୁଁ ଦେବାସୁର ନର ସ୍ଥାବର ଜଙ୍ଗମ ।

ଶବ୍ଦାଦି ଅଦନୁଁ ଖ୍ୟାତ ଅଦିତି ନାମରେ
ପ୍ରାଣ ରୂପେ ପ୍ରକାଶିଲେ ସକଳ ଅନ୍ତରେ ।

ପଞ୍ଚ ମହାଭୂତ ସଙ୍ଗେ ମିଳି ସେ ଅଦିତି
ପ୍ରାଣୀ ହୃଦ-ଗୁହାଶୟେ କଲେ ଅବସ୍ଥିତି ।

ସେ ଆଦ୍ୟ ଦେବତା ରୂପ ଦେଖେ ଯେଉଁ ଜନ
ସେହି ଏକା କରେ ଆତ୍ମା ସ୍ୱରୂପ ଦର୍ଶନ ।

ଗର୍ଭବତୀ ନାରୀ ଯଥା ସୁପଥ୍ୟ ଭୋଜନେ
ଗର୍ଭସ୍ଥ ତନୟ ପାଳେ ନିତ ସୁଯତନେ ।
ନାନା ଦରକାରୀ ଦ୍ରବ୍ୟ ଆହୃତ ପ୍ରଦାନେ
ସଦାଚାର ଶୁଚିବନ୍ତ ହୋଇ ସାବଧାନେ ।
ପୋଷନ୍ତି ଯାଜ୍ଞିକେ ତଥା ଯଜ୍ଞେ ହୁତାଶନ
ଆରଣି ଉଦରୁ କରି ମନ୍ତ୍ରେ ଆବାହନ ।
ସାଧୁ ଜ୍ଞାନୀ ଜନେ ପୁଣି ସଦା ଏକ ଲକ୍ଷ୍ୟେ
ବଶିଷ୍ଠ ପୁରୁଷେ ତଥା ପୂଜନ୍ତି ହୃଦୟେ ।
କରନ୍ତି ଏ ରୂପେ ଯାର ଅର୍ଚ୍ଚନା ସତତ
କର୍ମୀ ଜ୍ଞାନୀଗଣେ ବ୍ରତ ଧ୍ୟାନ ସୁସଂଯତ ।
ଅନ୍ତରେ ଅଧ୍ୱରେ ଯାର ନିତ୍ୟ ଅଧିଷ୍ଠାନ
ଯାତବେଦା ଆତ୍ମା ସେହି ନଚିକେତ ଜାଣ ।

ପ୍ରାଣୁ ସୂର୍ଯ୍ୟ ପ୍ରତିଦିନ ହୁଅନ୍ତି ଉଦିତ
ପ୍ରାଣେ ପୁଣି ପ୍ରତିଦିନ ଯାନ୍ତି ଅସ୍ତମିତ ।
ଏହା ନିତି ସମସୃଷ୍ଟି ପ୍ରଳୟ ବିଧାନ
ପ୍ରାଣୁଁ ସୂର୍ଯ୍ୟ ସୃଷ୍ଟ ପୁଣି ପ୍ରାଣେ ତିରୋଧାନ ।
ଇନ୍ଦ୍ର ଅଗ୍ନି ବରୁଣାଦି ଦେବତା-ଜଗତେ
ପ୍ରକାଶ ଇନ୍ଦ୍ରିୟ ଯେତେ ପ୍ରାଣୀ ଦେହଗତେ ।
ବର୍ତ୍ତି ରହିଛନ୍ତି ସର୍ବେ ପ୍ରାଣେ ଆଶ୍ରା କରି
ଭୂମି ଅବଲମ୍ବେ ଯଥା ତିଷ୍ଠେ ଅଚଳ ।

ପ୍ରାଣ ସର୍ବବ୍ୟାପୀ ବ୍ରହ୍ମ ସକଳ ଆଶ୍ରୟ
ଯହିଁ ସର୍ବ ବସ୍ତୁ ସୃଷ୍ଟି ସ୍ଥିତି ପ୍ରଳୟ ।
ପ୍ରାଣେ ବଳ ଦେଇପାରେ କଏ ଅନ୍ତଗାମୀ
ସେ ଯେ ସର୍ବାତ୍ମକ ବ୍ରହ୍ମ ସର୍ବ ଅନ୍ତର୍ଯ୍ୟାମୀ ।
ବ୍ରହ୍ମରୁ ସ୍ଥାବରପାଏ ସର୍ବତ୍ର ସମାନ
ଏକ ଅଦ୍ୱିତୀୟ ଆତ୍ମା ସର୍ବଭୂତ ପ୍ରାଣ ।
ଯେ ଆତ୍ମା ଚୈତନ୍ୟ ରୂପ ହୃଦେ ପ୍ରତିଫଳେ
ଚନ୍ଦ୍ର ବିମ୍ବ ଝଳେ ଯଥା ସରୋବର ଜଳେ ।
ଈଶ୍ୱର-ଚୈତନ୍ୟ ତହୁଁ ନୁହଇ ସେ ଭିନ୍ନ
ମାୟାବଶେ ଦିଶେ ଜୀବ କେବଳ ବିଚ୍ଛିନ୍ନ ।
ଜୀବ କାର୍ଯ୍ୟ, ପରମାତ୍ମା ଚୈତନ୍ୟ କାରଣ
ନାହିଁ ସେ ଉଭୟ ଭେଦ ନାହିଁ ତହିଁ ଅନ୍ୟ ।
ଅଜ୍ଞାନେ ପ୍ରଭେଦ ତହିଁ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।
ବ୍ରହ୍ମ ତହୁଁ ଆପଣାକୁ ନ ମଣେ ଯେ ଆନ
ଦେଖେ ନିଜ ହୃଦେ ପୂର୍ଣ୍ଣ ବ୍ରହ୍ମ ବିଦ୍ୟମାନ ।
ସର୍ବ ହୃଦେ ଦେଖେ ପୁଣି ପୂର୍ଣ୍ଣ ବ୍ରହ୍ମରୂପ
ଅତିକ୍ରମେ ସେହି ଏକା ଭବ-ଅନ୍ଧକୂପ ।
ଗୁରୁ ଉପଦେଶେ ଶାସ୍ତ୍ରବିହିତ ବିଧାନେ
ମାନସ ସତତ ଶୁଦ୍ଧ କରି ଏକଧ୍ୟାନେ ।

ବ୍ରହ୍ମଜ୍ଞାନ ଲଭେ ସୁଧୀ ହୁଅନ୍ତି ସକ୍ଷମ
ତତ୍ତ୍ୱବେତ୍ତ ହୁଏ ତେବେ ହୃଦୁଁ ଭେଦ ଭ୍ରମ ।

ଅପହୃତ ହେଲେ ଘୋର ଅଜ୍ଞାନ-ଅନ୍ଧାର
ସର୍ବତ୍ର ପ୍ରକାଶେ ବ୍ରହ୍ମ ଅଖଣ୍ଡ ଆକାର ।

ଅଜ୍ଞାନ ପ୍ରଭାବେ ଭେଦ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।

ଦେହ ଅଭ୍ୟନ୍ତରେ ହୃଦପଦ୍ମ ବିଦ୍ୟମାନ
ଜୀବାତ୍ମା ପୁରୁଷ ତହିଁ ଅଙ୍ଗୁଷ୍ଠ ପ୍ରମାଣ ।
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ
ଛୁଟେ ଭୟ ହେଲେ ଜୀବ-ବ୍ରହ୍ମ ଏକ ଜ୍ଞାନ ।
ଜୀବାତ୍ମା ପୁରୁଷ ସେହି ଅଙ୍ଗୁଷ୍ଠ ପ୍ରମାଣ
ନିର୍ଧୂମ ଉଜ୍ଜ୍ୱଳ ଜ୍ୟୋତି ପ୍ରାଏ ତେଜସ୍ୱାନ ।

ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶ୍ୱର
ଆଜି ସେହି କାଲି ସେହି ନିତ୍ୟ ଅନଶ୍ୱର ।

ନାହିଁ ଆତ୍ମା ସମ କିବା ଆତ୍ମା ଭିନ୍ନ ଆନ
ସର୍ବତ୍ର ସର୍ବଦା ଏକ ଆତ୍ମା ବର୍ତ୍ତମାନ । ।

ପର୍ବତ ଦୁର୍ଗମ ଶିଖେ ବରଷିଲେ ବାରି
ନାନା ଧାରେ ବହେ ସ୍ରୋତ ନାନା ଦିଗବ୍ୟସ ।

ଗିରିପରେ ନିମ୍ନ ଦେଶେ ଧାଏଁ ଛିନ୍ନ ଭିନ୍ନ
ନାଶଯାଏ ଅବଶେଷେ ହୁଏ ନାହିଁ ଚିହ୍ନ,

ଯେସନ ଅସଂଖ୍ୟ ଦେହେ ନାନା ଅଭିମୁଖେ
ଭ୍ରମଇ ସେ ନର ଚିରଜନ୍ମ ମୃତ୍ୟୁ-ଦୁଃଖେ ।

ଦେଖେ ଯେ ବିଭିନ୍ନ ଦେହେ ବ୍ରହ୍ମ ଭେଦାଭେଦ
ଲଭେ ନାନା ଯୋନି, ସହେ ଅସରନ୍ତ ଖେଦ ।

ସର୍ବଭୂତେ ଦେଖେ ଯେହୁ ଆତ୍ମା ନିତ୍ୟ ଏକ
ସେହି ନଚିକେତ, ମୁନି ଜ୍ଞାନୀ ସୁବିବେକ ।

ଶୁଦ୍ଧୋଦକେ ମିଶିଗଲେ ଯଥା ଶୁଦ୍ଧୋଦକ
ହୁଏ ଏକ ରୂପ ଆଉ ନ ରହେ ପୃଥକ ।

ଏକୀଭୂତ ହୁଏ ତଥା ବ୍ରହ୍ମେ ସେହି ଜନ
ସର୍ବସ ଦେଖେ ସେ ଏକ ଆତ୍ମା-ସନାତନ ।



## ଦ୍ୱିତୀୟ ବଲ୍ଲୀ

କି ବିଚିତ୍ର ପୁର ଏହି ନର କଳେବର
ପ୍ରାସାଦ ପ୍ରାକାର ଦୁରେ ସଜ୍ଜିତ ସୁନ୍ଦର ।

ସଂଯୋଜିତ ଯଥା ସ୍ଥାନେ ଏକାଦଶ ଦ୍ୱାର
ଯେଉଁ ରନ୍ଧ୍ରଅଛି ପୁଣି ସପତ ପ୍ରାକାରେ ।

ଯଥାସ୍ଥାନେ ସୁଶୋଭିତ ଶରୀର ପଦ୍ମଖା
ମଣିପୁର ଆଦି ନାମେ କେତେ ଅଟ୍ଟାଳିକା ।

କେତେ କକ୍ଷ, କେତେ ଯନ୍ତ୍ର, କେତେ ଗୁପ୍ତ ସ୍ଥାନ
ତରୁ ଲତା ଆଚ୍ଛାଦିତ ସୁରମ୍ୟ ଉଦ୍ୟାନ ।
ରନ୍ଧ୍ରଚକ୍ର ପ୍ରତି ଦ୍ୱାରେ ସୁଚତୁର ଦ୍ୱାରୀ
ଜାଣ କି କିଏ ଏ ଦେହ-ପୁର ଅଧିକାରୀ ?

ସେ ଚୈତନ୍ୟମୟ ଆତ୍ମା ଏଥି ଅଧିପତି
ନାହିଁ ଯାର କ୍ଷୟ ବୃଦ୍ଧି ବିନାଶ ଉତ୍ପତ୍ତି ।

ଦେହ ଅଭ୍ୟନ୍ତରେ ଯାର ହେଲେ ହେଁ ନିବାସ
ଆଦିତ୍ୟ ପରି ଏ ନିତ୍ୟ ପ୍ରତ୍ୟକ୍ଷ ପ୍ରକାଶ ।

ସର୍ବଭୂତେ ଏକ ଆତ୍ମା ଦୃଢ଼ ମନେ ଧରି
ବ୍ରହ୍ମଧ୍ୟାନ କରେ ଯେହୁ ମୋହ ପରିହରି ।

ଏ ଜୀବନେ ମୁକ୍ତ, ସେହୁ ପଡ଼େ ନାହିଁ ଶୋକେ
ଅକ୍ଷୟ କୈବଲ୍ୟ ଭୁଞ୍ଜେ ଗଲେ ପରଲୋକେ ।

ଉଭେ କଦାଚିତେ ଆଉ ନ ଲଭେ ଉତ୍ପତ୍ତି
ପରମବ୍ରହ୍ମରେ ମିଳେ; ପାଏ ମୋକ୍ଷ ଗତି ।

ନର ଦେହ ନୁହେଁ ଏକା ଆତ୍ମାର ନିବାସ
ସର୍ବତ୍ର ସମାନ ଆତ୍ମା ବିଶ୍ୱେ ପରକାଶ ।
ସର୍ବବ୍ୟାପୀ ସର୍ବଗାମୀ ସର୍ବ ଅଧିଷ୍ଠାନ
ଉଜ୍ଜ୍ୱଳ ଦ୍ୟୁଲୋକେ ଆତ୍ମା-ରବି ଅଂଶୁମାନ ।
ଅନ୍ତରୀକ୍ଷେ ସମୀରଣ ଅନଳ ଅଧ୍ୱରେ
ସେହୁ ଏକା ପ୍ରତିଷ୍ଠିତ ବିଶ୍ୱବେଦୀ ପରେ ।

ଉଜ୍ଜ୍ୱଳ ପବନ ସୋମଯୋଗେ ଶୁଦ୍ଧାଧାରେ
ନରଦେହେ ବରଦେହେ ପ୍ରକାଶ ସଂସାରେ ।
ସତ୍ୟେ ଆତ୍ମା ଅବସ୍ଥିତ ଆକାଶେ ଈଶ୍ୱର
ବିଶ୍ୱ ମହାମୂର୍ତ୍ତେ ଆତ୍ମା ସଦା ଉପସ୍ଥର ।
ଜଳେ ସ୍ଥଳେ ଧରାଧାରେ ହୁଏ ଯେ ଉଦ୍ଭବ
ସରିତ ନିର୍ଝର ମୀନ ମୁକ୍ତ ବ୍ରୀହି ସବ ।
ସ୍ଥାବର ଜଙ୍ଗମ ଆଦି ଯେତେ ବସ୍ତୁତତ୍ତ୍ୱ
ସେ ସକଳେ ଏକମାତ୍ର ଆତ୍ମାର ଉଦୟ ।
ସର୍ବଭୂତସ୍ଥ କିନ୍ତୁ ସତ୍ୟ ସନାତନ
ଏକ ଅଦ୍ୱିତୀୟ ନିତ୍ୟ ଅପରିବର୍ତ୍ତନ ।
ସର୍ବ ମୂଳାଧାର ସେହି ସକଳ ନିଦାନ
ତବ ଜିଜ୍ଞାସିତ ବସ୍ତୁ ବ୍ରହ୍ମ ସୁମହାନ ।
ନିଗୂଢ଼ ଏ ବ୍ରହ୍ମତତ୍ତ୍ୱ ସ୍ଥିର କରି ମନ
କର ନଚିକେତ, ଏହା ହୃଦୟେ ଧାରଣ ।
ଜୀବାତ୍ମା ପୁରୁଷ ରହି ହୃଦୟ-କମଳେ
ପେଷେ ପ୍ରାଣବାୟୁ ଊର୍ଦ୍ଧ୍ୱେ ଅପାନକୁ ତଳେ ।
ମୁମୁକ୍ଷୁବରେଣ୍ୟ ନିଜେ ମଧ୍ୟେ ସମାସୀନ
ଦେବରୂପୀ ଇନ୍ଦ୍ରିୟାଦି ଯାହାର ଅଧୀନ ।
ଲଗିଥାନ୍ତି ନିରନ୍ତର ଆପଣା ବ୍ୟାପାରେ
ଭୃତ୍ୟଗଣ ଖଟେ ଯଥା ପ୍ରଭୁ ଉପସ୍ଥରେ ।

ଦେହେନ୍ଦ୍ରିୟ ପ୍ରାଣ ଆଦି ଆତ୍ମାରୁ ବିଭିନ୍ନ
ସର୍ବ ପରେ ଆତ୍ମାସ୍ୱାମୀ ସ୍ୱତନ୍ତ୍ର ସ୍ୱାଧୀନ ।

ଗୃହ ତେଜି ଗୃହସ୍ୱାମୀ ହୋଇଲେ ଅନ୍ତର
ପଳାନ୍ତି ସେବକେ କିଏ କାହିଁ ଛାଡ଼ି ଘର ।

ସୁନା ଘର ହୋଇଯାଏ ଚୂନା ସେହିକ୍ଷଣେ
ମୋର ବୋଲି କହିବାକୁ ରହେ ନାହିଁ ଜଣେ ।

ଛାଡ଼ି ଗଲେ ଦେହ ତଥା ଦେହ ଅଧୀଶ୍ୱର
କିଏ ଏଥି ରହେ ବାକ ଜଗିବାକୁ ଘର ?

ସ୍ୱାମୀ ଥିଲାବେଳେ ଯେହି ଥାଆନ୍ତି ଗରବେ
ସ୍ୱାମୀ ଗଲେ ପଛେ ପଛେ ଯାନ୍ତି ସେ ସରବେ ।

ମନ ପ୍ରାଣ ଇନ୍ଦ୍ରିୟାଦି ନ ରହନ୍ତି କେହି
ଗଲେ ସେହି, ସେହି ଆତ୍ମା ସେହି ଏକା ଦେହୀ ।

ପ୍ରାଣାପାନ ବାୟୁ ବଳେ ବଞ୍ଚି ନାହିଁ ନର
ଜୀବନ୍ତି ଯା ଯୋଗେ ପ୍ରାଣାପାନୁ ସେ ଇତର ।

ନରଦେହେ ପରମାତ୍ମା ଜୀବନ ନିଦାନ
ଯାହାର ଆଶ୍ରୟେ ପିଣ୍ଡେ ରହେ ପ୍ରାଣାପାନ ।

ବହୁ ଉପାଦାନେ ଗଢ଼ା ପଦାର୍ଥନିଚୟ
ଆହାର ଉଦ୍ୟାନ ଶଯ୍ୟା ବସନ ଆଳୟ ।

ଲାଗେ ନାହିଁ କେବେ ଯଥା ନିଜ ପ୍ରୟୋଜନେ
ଭୋକ୍ତା ହୁଏ ସଦା ଅନ୍ୟ ସ୍ୱଭୋଗସାଧନେ ।

ପ୍ରାଣାପାନ ଇନ୍ଦ୍ରିୟାଦି ଯଥା ସହଯୋଗେ
ଅବିରତ କାର୍ଯ୍ୟେ ରତ ଆତ୍ମ ଉପଭୋଗେ ।
ଏ ସକଳଙ୍କ ଆତ୍ମା ଭିନ୍ନ ନିତ୍ୟ ଅସହିତ
ପ୍ରାଣାପାନ ଆଦି ସର୍ବେ ଆତ୍ମାର ଆଶ୍ରିତ ।

ଗୁହ୍ୟ ସନାତନ ବ୍ରହ୍ମତତ୍ତ୍ୱ ଗଉତମ
କହେ ଏବେ ଶୁଣ ଯେଣେ ଯିବ ମନୁ ଭ୍ରମ ।

ଲଭିଲେ ଯେ ଜ୍ଞାନ ମିଳେ ଚିର ମୋକ୍ଷପଦ
ପାରି ହୁଏ ଜୀବ ଜନ୍ମ ମରଣ-ବିପଦ ।

ବ୍ରହ୍ମଜ୍ଞାନ ବିନା ଦେହୀ ମରି ପୁଣ ପୁଣ
ଭଜେ ଯେ ଦୁର୍ଗତି କହେଁ ନଚିକେତ, ଶୁଣ ।

ଆପଣା ଆପଣା ଜ୍ଞାନ କର୍ମ ଅନୁସାରେ
ବାର ବାର ଲଭେ ଜୀବ ଜନ୍ମ ଯୋନିଦ୍ୱାରେ ।

ଆଉ ଥୋକେ ଜୀବ ପୁଣି ଜ୍ଞାନ-କର୍ମ-ଫଳେ
ଉଦ୍ଭିଦ ସ୍ଥାବର ରୂପେ ଉପୁଜେ ଭୂତଳେ ।

ନୁହେଁ ଯେତେ ଦିନ ଯାଏ ସର୍ବ କର୍ମକ୍ଷୟ
ନୁହେଁ ଯେତେ ଦିନ ବ୍ରହ୍ମଜ୍ଞାନ ସମୁଦୟ,
ଭ୍ରମେ ଜୀବ ଏହିପରି ଯୋନି ଶତ ଶତ
ପୂର୍ଣ୍ଣଜ୍ଞାନେ ହୁଏ ଶେଷେ ବନ୍ଧନ ମୁକତ ।

ନିଦ୍ରାର ଉପ୍ରେଙ୍କ ନର ଲଭିଲେ ଅଗମ
ପ୍ରାଣ ଇନ୍ଦ୍ରିୟାଦି ଭଜେ କାର୍ଯ୍ୟରୁ ବିରତ ।

ପ୍ରାଣେନ୍ଦ୍ରିୟଗଣ ଯେବେ ନିଦ୍ରା ଅଭିଭୂତ
ସ୍ୱପନେ ଯେ ସୃଜେ ଭୋଗ୍ୟ ବିଷୟ ଅଦ୍ଭୁତ ।

ଭୋଗେ ଇଚ୍ଛାମତେ ଯେତେ ଇଷ୍ଟ ସୁଖରାଶି
ସେହି ଶୁଦ୍ଧ ସମୁଜ୍ଜ୍ୱଳ ବ୍ରହ୍ମ ଅବିନାଶୀ ।

ଭୂଲୋକ ଦ୍ୟୁଲୋକ ଆଦି ସର୍ବେ ବ୍ରହ୍ମାଶ୍ରିତ
ନୁହେ ନଚିକେତ, କିଛି ବ୍ରହ୍ମରୁ ଅତୀତ ।

ଶରୀର ବିଭେଦେ ଆତ୍ମା ନୁହେ ଭିନ୍ନ ଭିନ୍ନ
ସକଳ ଅନ୍ତରେ ଆତ୍ମା ଏକ ଅବିଚ୍ଛିନ୍ନ ।

ଜଗତର ଅନ୍ତର୍ଗତ ଅଗ୍ନି ଯଥା ଏକ
ରୂପଭେଦେ କାଷ୍ଠାଦିରେ ପ୍ରକାଶେ ଅନେକ ।

ତଥା ଏକ ଆତ୍ମା ସର୍ବଭୂତ ଅଭ୍ୟନ୍ତରେ
ଶରୀର ବିଭେଦେ ଦିଶେ ବିଭିନ୍ନ ରୂପରେ ।

ଶରୀର ଆକାର ବର୍ତ୍ତେ ଆତ୍ମା ଅବାଧିତ
ଆକାଶ ପରାଏ ମୁକ୍ତ ବିକାର ରହିତ ।

ଏକା ବାୟୁ ରହିଛି ଯେ ସାରା ବିଶ୍ୱ ଭରି
ବସ୍ତୁଭେଦେ ଭିନ୍ନ ରୂପେ ପ୍ରକାଶେ ଯେପରି,
ସେହିପରି ଆତ୍ମା ଏକ ସର୍ବ ଭୂତାନ୍ତରେ
ଶରୀର ବିଭେ ଯେ ଦିଶେ ବିଭିନ୍ନ ରୂପରେ ।

ଆତ୍ମାକୁ ପରଶେ ନାହିଁ ଦେହ ରୂପ ଗୁଣ
ଆକାଶ ପରାଏ ଆତ୍ମା ନିର୍ଲିପ୍ତ ଅକ୍ଷୁର୍ଣ୍ଣ ।

ସୂର୍ଯ୍ୟାଲୋକେ ଦୃଷ୍ଟିଙ୍କୁ ପ୍ରକାଶେ ଯେସନ
ପ୍ରତି ପ୍ରାଣୀ ନେତ୍ରେ ଜ୍ୟୋତି ବିଭାସେ ତେମନ ।

ଦୃଷ୍ଟିଦୋଷେ ମନ-ନେତ୍ର ହୁଏ ବିକଳିତ
ସହସ୍ରାଂଶୁ କେବେ କିନ୍ତୁ ନ ହୁଏ ଦୂଷିତ

ଏକ ଆତ୍ମା ସର୍ବଭୂତେ ବିରାଜିତ ତଥା
କର୍ମ ଫଳାଫଳେ ତାକୁ ନ ଲାଗଇ ବ୍ୟଥା ।

ଲୋକ ସୁଖ ଦୁଃଖେ ଆତ୍ମା ନ ହୁଏ କ୍ଷୋଭିତ
ଆକାଶ ସମାନ ଆତ୍ମା ସଙ୍ଗବିରହିତ ।

ଜଳାଶୟ କଳ୍ପେ ନର ସିକତା ପ୍ରାନ୍ତରେ
ନୀଳାକାଶ ଦେଖେ ଦୂର ମିଳନ ପଥରେ ।

ରଜ୍ଜୁ ଦେଖି ସର୍ପ ବୋଲି ପାଏ ମନେ ଭୟ
ଶୌକ୍ତିକେ ରଜତ ବୋଲି କରେ ସୁନିଶ୍ଚୟ ।

ବୁଦ୍ଧିଦୋଷେ ଘଟଇ ଏ ଦୃଷ୍ଟି ବିପର୍ଯ୍ୟୟ
ରଜ୍ଜୁ ଆଦି ଜ୍ଞାନେ ଯେବେ ପାଏ ଭ୍ରମ କ୍ଷୟ ।

ବିପଶ୍ଚିତ ବୁଦ୍ଧି ଯୋଗେ ଦୃଷ୍ଟି ବିପରୀତ
ବୁଦ୍ଧିଦୋଷେ ରଜ୍ଜୁ ଆଦି ନ ହୁଏ ଦୂଷିତ ।

ନଚିକେତ, ଏହିପରି ଆତ୍ମଗତ ଜାଣ
ସୁଖ ଦୁଃଖ ଆଦି ସବୁ ଅବିଦ୍ୟା ଉତ୍ଥାଣ ।

ସୁଖ ଦୁଃଖ ଲିପ୍ତ ନୁହେ ଆତ୍ମା ନିର୍ବିକାର
ପ୍ରକାଶେ ଏ ସତ୍ୟ ଗଲେ ଅବିଦ୍ୟା-ଅନ୍ଧାର ।

ସର୍ବଭୂତ ଅନ୍ତରାତ୍ମା ସର୍ବ ମୂଳାଧାର
ଯାର ବଶେ ଆତଯାତ ନିଖିଳ ସଂସାର ।

ବିଶୁଦ୍ଧ ବିଜ୍ଞାନ ରୂପେ ନିଜେ ନିତ୍ୟ ଏକ
ନାମ ରୂପ ଆଦି ଭେଦେ ହୁଅନ୍ତି ଅନେକ ।

କରେ ସେ ଅଖଣ୍ଡ ବ୍ରହ୍ମ ସ୍ୱରୂପ ଦର୍ଶନ,
ନିଜ ହୃଦ ମୁକ୍ତାକାଶେ ଯେ ବିବେକୀ ଜନ ।

ସ୍ୱଚ୍ଛ ଦରପଣେ ଦେଖେ ଯଥା ନିଜ ମୁଖ
ଲଭେ ସେ ଶାଶ୍ୱତ ଶାନ୍ତି ଆତ୍ମାନନ୍ଦ ସୁଖ ।

ବିଷୟେ ଆସକ୍ତ ଅନ୍ୟ ଅବିବେକୀ ନରେ
ନ ଦେଖନ୍ତି ଆତ୍ମରୂପ ଆପଣା ଅନ୍ତରେ ।

ପାଇବେ ଶାଶ୍ୱତ ସୁଖ କାହୁଁ ସେ ଅଧମ
ନ ଛାଡ଼ି ନିଜକୁ ନିଜେ ଅଜ୍ଞାନ ବିଭ୍ରମ ।

ସ୍ୱର୍ଗସ୍ଥ ନର ଅବା ଜଙ୍ଗମ ସ୍ଥାବର
ଚରାଚର ବିଶ୍ୱଲୋକେ ସକଳ ନଶ୍ୱର ।

ଆତ୍ମା ଏକା ଅନଶ୍ୱର ସମସ୍ତ ନଶ୍ୱରେ
ଆତ୍ମା ଏକା ନିତ୍ୟ ସର୍ବ ଅନିତ୍ୟ ଅନ୍ତରେ,

ସମସ୍ତ ଚେତନେ ଆତ୍ମା କେବଳ ଚେତନା
ଏକ ଆତ୍ମା ପୂର୍ଣ୍ଣ କରେ ଅସଂଖ୍ୟ କାମନା ।

ଆତ୍ମଦର୍ଶୀ ଜ୍ଞାନୀ ଜନେ ମିଳେ ନିତ୍ୟ ସୁଖ
ଆତ୍ମଜ୍ଞାନମୃତ ରହୁଁ ସତତ ବିମୁଖ ।

ସେ ଶାଶ୍ୱତ ଆତ୍ମାନନ୍ଦ ସେ ସୁଖ ଅଶେଷ
ଇତର ଜନ ବା କଏ କରିବ ନିର୍ଦ୍ଦେଶ ?

ନିଷ୍କାମ ଜିତେନ୍ଦ୍ରିୟ ଆତ୍ମଦର୍ଶୀ ଜ୍ଞାନୀ
ଏହି ସେହି ସୁଖ ବୋଲି କହନ୍ତି ପ୍ରମାଣି ।

ଯତିଗଣ ଅନୁଭୂତ ସେ ସୁଖ ଶାଶ୍ୱତ
କି ଉପାୟେ କି ରୂପେ ମୁଁ ହେବି ଅବଗତ

ସେ ପରମ ସୁଖ କିଏ ପାଏ କି ପ୍ରକାଶ ?
ନରଲଭ୍ୟ କି ସେ ? ସତେ କରିବି ବିଶ୍ୱାସ ?

'ମୁଁ' ବୋଲି ମାନବେ ଯେବେ ଆତ୍ମ-ବୁଦ୍ଧି ଯୁଞ୍ଜେ
ଆସେ କି ସେ ସୁଖ ? ସତେ ତାର ଦୁଃଖ ଭୁଞ୍ଜେ ?

ନ ହୁଅ ଅଧୀର ନର ନ ତେଜ ବିଶ୍ୱାସ
ଆନନ୍ଦମୟ ସେ ଆତ୍ମା ନିତ୍ୟ ସ୍ୱ-ପ୍ରକାଶ ।

ଆପଣେ ନିଭାସେ ଆତ୍ମା ଆପଣା ଆଲୋକେ
ସୂର୍ଯ୍ୟ ଚନ୍ଦ୍ର ତାରା ଆଦି ନାହିଁ ଆତ୍ମା-ଲୋକେ ।

ନ ଭାସେ ତପନ ତହିଁ ଚନ୍ଦ୍ରମା ନ ଝଲେ
ରତ୍ନଦୀପାବଳି ସମ ତାରକା ନ ଜଳେ ।

ନାହିଁ ତହିଁ କ୍ଷଣପ୍ରଭା ଚପଳ ଝଟକ
ଉଜ୍ଜ୍ୱଳେ ଜଳିବ କାହିଁ ଅବା ଏ ପାବକ ?

ଆତ୍ମରୂପୀ ବ୍ରହ୍ମମୟ ପରମ ଈଶ୍ୱରେ
ରବି ଶଶୀ ଆଦି ସର୍ବ ସଦା ଅନୁସରେ ।

ଆଲୋକିତ ହୁଏ ସର୍ବ ସେ ବ୍ରହ୍ମ ଆଲୋକେ
ଦୀପ୍ତି ମନ୍ତ ଜଣେ ଯାହା ଦ୍ୟୁଲୋକେ ଭୂଲୋକେ ।



## ତୃତୀୟ ବଲ୍ଲୀ

ସଂସାର ଅଶ୍ୱତ୍ଥ ତରୁ ଅନିତ୍ୟ ଅସ୍ଥିର
ଊର୍ଦ୍ଧ୍ୱେ ମୂଳ ମେଲିଅଛି ନିମ୍ନେ ଶାଖା ଶିର ।

ଅବ୍ୟକ୍ତୁଁ ସ୍ଥାବର ଯାଏ ନିଖିଳ ସଂସାର
ସେ ପରମପଦ ବିଷ୍ଣୁ ଏହା ମୂଳାଧାର ।

ସଜୀବ ନିର୍ଜୀବ ଦେବ ଅସୁର ମାନବ
ପଶୁ ପକ୍ଷୀ ତରୁ ତୃଣ ଯାବତ ସଂଭବ ।

ସଂସାର ଅଶ୍ୱତ୍ଥେ ସର୍ବେ ଶାଖା ଅଗଣନ
ଅନାଦି ପ୍ରବାହ ଏ ଯେ ବୃକ୍ଷ ସନାତନ ।

ଏ ବୃକ୍ଷର ମୂଳ ବୀଜ ଉଜ୍ଜ୍ୱଳ ଭାସ୍ୱର
ସର୍ବଲୋକାଶ୍ରୟ ବ୍ରହ୍ମ ନିତ୍ୟ ଅନଶ୍ୱର ।

ଅତୀତ ନୁହଇ ତହୁଁ କିଛି ଏ ଜଗତେ
ଏ ସେ ଆତ୍ମା ନଚିକେତ, ପୃଚ୍ଛିଲ ଯା ମତେ ।

ନିଃସୃତ ପରମବ୍ରହ୍ମୁଁ ବିଶ୍ୱ ବସ୍ତୁଗଣ
ସେ ବ୍ରହ୍ମ ପ୍ରେରଣେ ସ୍ପନ୍ଦେ ବିଶ୍ୱ ଅନୁକ୍ଷଣ ।

ମହା ଭୟଙ୍କର ସେହି ପ୍ରଭୁ ବିଶ୍ୱେଶ୍ୱର
ପ୍ରଚଣ୍ଡ ଉଦାତ୍ତ ସଦା ଶକ୍ତ ବଜ୍ରଧର ।

ଯାର ଡରେ ରବି ଶଶୀ ଗ୍ରହ ତାରାପନ୍ତି
ଅବିଶ୍ରାନ୍ତ ନିଜ ନିଜ ମାର୍ଗେ ବିଚରନ୍ତି,

ଅନ୍ତରର ସାକ୍ଷୀ ସେହି ପ୍ରଭୁ ଅନ୍ତର୍ଯ୍ୟାମୀ
ଜାଣି ଯେହୁ ସଦା ତାଙ୍କ ଆଜ୍ଞା ଅନୁଗାମୀ ।

ଅମରତ୍ୱ ଲଭେ ସେହୁ ଯାଏ ଭବପାରେ
ଫେରେ ନାହିଁ କେବେ ଆଉ ଏ ଘୋର ସଂସାରେ

ସେ ବିଶ୍ୱନିୟନ୍ତୁ ଭୟେ ପ୍ରତପେ ତପନ,
ପ୍ରତାପେ ପାବକ, ବହେ ସତତ ପବନ,

ଯଥାକାଳେ ବର୍ଷେ ଇନ୍ଦ୍ର, ପ୍ରଶାସେ ଶମନ,
ନିଜ ନିଜ କାର୍ଯ୍ୟେ ରତ ଦିଗପାଳଗଣ ।

ସ୍ୱାମୀବିଶେଷ ଉପସ୍ଥିତ ପରିକର ପ୍ରାଏ ।
ପ୍ରତ୍ୟେକ ଆପଣା ପଥେ ଅବିଶ୍ରାନ୍ତ ଧାଏଁ ।

ସେ ବିଶ୍ୱକାରଣ ପ୍ରଭୁ ବିଶ୍ୱ ମୂଳାଧାରେ
ଜାଣିବାକୁ ସମର୍ଥ ଯେ ହୁଏ ଏ ସଂସାରେ,

ସ୍ୱରୂପ ତାଙ୍କର ହୃଦେ କରେ ଅନୁଭୂତ
ଦେଖେ ଏ ଅନନ୍ତ ବିଶ୍ୱ ତାଙ୍କର ବିସ୍ତୃତ ।

ମରଣ ପୂର୍ବରୁ ଏହି ମର୍ତ୍ତ୍ୟ-କଳେବରେ
ଯାଏ ସେ ବିଦେହ ମୁକ୍ତି, ଭବସିନ୍ଧୁ ତରେ ।

ଲଭେ ନାହିଁ ଏଥୁ ଯେହୁ ବ୍ରହ୍ମ ଅବଗତ
ମରଣାନ୍ତେ ହେଲେ ତାର ନାହିଁ ମୋକ୍ଷଗତ ।
ଏ ଦେହ ଛାଡ଼ି ସେ ପୁଣି ଆନ ଦେହ ପାଏ
କର୍ମ ଅନୁଯାୟୀ ଦେହୁଁ ଦେହାନ୍ତର ଯାଏ ।
ଅସଂଖ୍ୟ ଯୋନିରେ ଜନ୍ମେ ଭ୍ରମେ ନାନା ଲୋକେ
ଉଠେ ପଡ଼େ ସୁଖେ ଦୁଃଖେ ସହେ ଭବ-ଶୋକେ ।
ନିଜ ମୁଖ ପ୍ରତିବିମ୍ବ ସ୍ୱଚ୍ଛ ଦରପଣେ
ଦେଖେ ନର ଅବିକଳ ବିଶଦ ଯେସନେ ।
ସୁନିର୍ମଳ ସମୁଜ୍ଜ୍ୱଳ ବୁଦ୍ଧି ଆଦରଶେ
ତେସନେ ଆତ୍ମାର ରୂପ ଦେଖେ ଜ୍ଞାନବଶେ ।
ଅସ୍ପଷ୍ଟ ସ୍ୱପନେ ଯଥା ରୂପ ଅବୟବ
ପିତୃଲୋକେ ଦିଶେ ତଥା ଆତ୍ମା ଅସୌଷ୍ଠବ ।
ରୂପରେଖ ଅଙ୍ଗହୀନ ସଲିଳେ ଆକୃତି
ଆତ୍ମାର ଗନ୍ଧର୍ବଲୋକେ ତଥା ଅନୁଭୂତି ।
ବ୍ରହ୍ମଲୋକେ ଦିଶେ ଏକା ଆତ୍ମା ପରିଷ୍କାର
ସ୍ପଷ୍ଟ ବିଲକ୍ଷଣ ଯଥା ଆଲୋକ ଅନ୍ଧାର ।
ବ୍ରହ୍ମଲୋକ ପ୍ରାପ୍ତି ଅତି ଦୁଃସାଧ୍ୟ ଦୁର୍ଲ୍ଲଭ
ବହୁ ଯାଗ ଯୋଗ ଜ୍ଞାନେ ଲଭେ ତା ମାନବ ।
ହେ ଚତୁର ନର, ତେଣୁ ହୁଅ ସାବଧାନ
ଆପଣା ଅନ୍ତରେ ସଦା କର ବ୍ରହ୍ମ ଧ୍ୟାନ ।

ସ୍ୱଚ୍ଛ ଶୁଦ୍ଧ କର ନିଜ ବୁଦ୍ଧି-ଦରପଣ
ଇଚ୍ଛ ଯଦି ପାଇବାକୁ ବ୍ରହ୍ମ ଦରଶନ ।
କ୍ଷିତି ଅପ ତେଜ ବାୟୁ ବ୍ୟୋମ ମହ ଭୂତ
ପଞ୍ଚେନ୍ଦ୍ରିୟ ଏ ପଞ୍ଜର ସତ୍ୟାଂଶୁ ସମ୍ଭୂତ ।
ରାଜସ ଅଂଶରୁ ପାଣି ପାଦ ଆଦି ହୁଏ
ଜ୍ଞାନକର୍ମେନ୍ଦ୍ରିୟେ କିନ୍ତୁ ଆତ୍ମା ଯୁକ୍ତ ନୁହେ ।
ସ୍ୱପ୍ନ ଜାଗରଣେ ଦେହେ ଇନ୍ଦ୍ରିୟନିଚୟ
ବିଭେଦେ ବିକାଶେ ଯାଏ ପ୍ରଳୟ ଉଦୟ ।
ଇନ୍ଦ୍ରିୟ ଉଦୟ ଅସ୍ତ ଆତ୍ମ ଅବାଧିତ
ବୁଝନ୍ତି ଏ ଆତ୍ମତତ୍ତ୍ୱ କେବଳ ପଣ୍ଡିତ
ଆତ୍ମାର ନ ଘଟେ କେବେ ପ୍ରଳୟ ଉଦୟ
ସତତ ଜାଗ୍ରତ ଆତ୍ମା ଅକ୍ଷୟ ଅବ୍ୟୟ ।
ଆତ୍ମା ଇନ୍ଦ୍ରିୟର ବୁଝି ଏହି ଭେଦାଭେଦ ।
ତରନ୍ତି ବିବେକୀ ଜନ୍ମ ସର୍ବ ଶୋକ ଖେଦ ।
ଇନ୍ଦ୍ରିୟ ଶକ୍ତିରେ ସାର ପ୍ରାଣୀ ଦେହ ଦ୍ୱାର
ସକଳ ଇନ୍ଦ୍ରିୟ ପରେ ମନ ଅଧିକାର ।
ଇନ୍ଦ୍ରିୟରୁ ବଳ ତେଣୁ ମନ ଶ୍ରେଷ୍ଠତର
ମନ ପରେ ବୁଦ୍ଧି, ପୁଣି ମହତ ତା ପର ।
ହିରଣ୍ୟଗର୍ଭ ନାମେ ସେ ମହତ ଖ୍ୟାତ
ବିଶ୍ୱ ବୁଦ୍ଧି ସମବାୟ ସର୍ବ ବିଶ୍ୱ ବ୍ୟାପ୍ତ ।

ସେ ହିରଣ୍ୟଗର୍ଭ ପରେ ଅବ୍ୟକ୍ତ ପ୍ରଧାନ
ସାଂଖ୍ୟେ ଯା ପ୍ରକୃତି, ମାୟା ବେଦାନ୍ତେ ଯା ନାମ ।

ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ଉତ୍ତମ
ସର୍ବବ୍ୟାପୀ ସର୍ବେଶ୍ୱର ସତ୍ୟ ସନାତନ ।

ନାହିଁ ଯାର ଚିହ୍ନ, ନାହିଁ ଗୁଣ ରୂପ ନାମ
ସେହି ଏକା ପରମାତ୍ମା ସେ ପରମ ଧାମ ।

ଜାଣେ ଏ ପରମ ତତ୍ତ୍ୱ,.ସେ ପ୍ରାଣୀ ସଂସାରେ
ଲଭେ ଅମୃତତ୍ୱ, ଯାଏ ଭବସିନ୍ଧୁ ପାରେ ।

ଆତ୍ମାର ସ୍ୱରୂପ ନୁହେ ପ୍ରତ୍ୟକ୍ଷ ଗୋଚର
ଆତ୍ମାକୁ ନୟନେ କେହି ଦେଖି ନାହିଁ ନର ।

ସୁନିଶ୍ଚିତ ବୁଦ୍ଧି ବଳେ କଲେ ଧୀର ଧ୍ୟାନ
ପ୍ରକାଶେ ମାନବ-ହୃଦେ ଶୁଦ୍ଧ ଆତ୍ମଜ୍ଞାନ

ଆତ୍ମା ବ୍ରହ୍ମକୁ ଯେ ଜାଣେ ତତ୍ତ୍ୱେ କରି ଲୟ
ଅମୃତ ସେ ମରଦେହ ଧରି ମୃତ୍ୟୁଞ୍ଜୟ ।

ଚକ୍ଷୁ ଯେବେ ବାହ୍ୟ ଦୃଶ୍ୟ ଦେଖି ନ ଦେଖଇ
କର୍ଣ୍ଣ ଯେବେ ବାହ୍ୟ ନାଦ ଶୁଣି ନ ଶୁଣଇ ।

ସୁଗନ୍ଧ ଦୁର୍ଗନ୍ଧ ନାସା ନ କଲେ ଆଘ୍ରାଣ
ପରଶେ ନ ବୁଝେ ଦେହ ଶୀତ ଉଷ୍ଣ ଜ୍ଞାନ ।

ଆସ୍ୱାଦେ ନ ଜାଣେ ଜିହ୍ୱା ରସ ଭେଦାଭେଦ
ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ନିର୍ବେଦ ।

ଅନ୍ତର୍ମୁଖେ ରହେ ଯେବେ ମାନସ ଆସକ୍ତି
ବିଷୟ ବ୍ୟାପାରେ ବୃତ୍ତି ନୁହେ ଅବିରତ ।

ଏକାନ୍ତ ଉଦାର ଶୁଦ୍ଧ ହୁଏ ଯେବେ ମନ୍ତ
ଜ୍ଞାନୀ ଯୋଗୀଗଣ ମତେ ସେ ପରମ ଶାନ୍ତ ।

ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ବିରତ
ହୃଦୟ-କମଳେ ହୁଏ ମନ ଅଧିଗତ ।

ମାନସ ଧାରଣା ଦୃଢ଼ ସ୍ଥିର ସୁନିଶ୍ଚିତ
ହରଷେ ବିଷାଦେ କେବେ ନୁହେଁ ବିଚଳିତ ।

ଯୋଗେ ଅଧିରୂଢ଼ ହେବେ ସାଧକର ମତ
ହୁଏ ହୃଦେ ପୂର୍ଣ୍ଣାନନ୍ଦ ଆତ୍ମା ଅବଗତ ।

କଠିନ ଏ ଯୋଗମାର୍ଗ ଦୁଃସାଧ୍ୟ ସାଧନ
ଅଳପ ବିକ୍ଷିପ୍ତ ବ୍ୟଗ୍ର ହେଲେ ଏଥି ମନ ।

ପ୍ରମାଦେ ବିଷମ ଗତି ଘଟେ ଅକସ୍ମାତେ
ପଡ଼ଇ ସାଧକ ମହା ଦୁସ୍ତର ବିପତ୍ପାତେ ।

ତେଣୁ ଅତି ସାବଧାନେ ଏକାଗ୍ର ମାନସେ
ନିରୋଧି ଇନ୍ଦ୍ରିୟଗଣ ରଜନୀ ଦିବସେ ।

ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ
ଆତ୍ମ ଦରଶନେ ଯେବେ ବାଞ୍ଛା ନିତ୍ୟ ହିତ ।

ଅଜ୍ଞେୟ ଯେ ମନ ବାକ୍ୟ ଇନ୍ଦ୍ରିୟ ସଂଯୋଗେ
ଗୋଚର କେବଳ ହୃଦେ ଜ୍ଞାନ ଧ୍ୟାନ ଯୋଗେ ।

ଆସ୍ତିକ ବିଶ୍ୱାସୀ ଗୁରୁ ବିନା କିଏ ଆନ
ଦେଇପାରେ ସେ ଅନାଦି ବ୍ରହ୍ମତତ୍ତ୍ୱ ଜ୍ଞାନ
ପାଷଣ୍ଡ ନାସ୍ତିକଗଣ ବ୍ରହ୍ମେ ଅବିଶ୍ୱାସୀ
ଦୂରେ ତାଙ୍କ ସଙ୍ଗ ତେଜ ଅମୃତପ୍ରୟାସୀ ।
ନିର୍ଗୁଣ ସଗୁଣ ଆତ୍ମା ଉଭୟ ପ୍ରକାର
ସଗୁଣ ଉପାଧି ବଶେ ସୃଷ୍ଟି ଏ ସଂସାର ।
ବିନା କାରଣେ କାହିଁ କାର୍ଯ୍ୟର ଉଦ୍‌ଭବ ?
ଆତ୍ମା ବିନା ଏ ସଂସାରେ ସୃଷ୍ଟି ଅସମ୍ଭବ ।
ଗୁରୁ ଉପଦେଶ ଲଭି ଏ ତତ୍ତ୍ୱ ନିଶ୍ଚୟ
ଆତ୍ମାର ଅସ୍ତିତ୍ୱେ ଆଦ୍ୟେ କରିବ ପ୍ରତ୍ୟୟ ।
ଧୀର ଭାବେ ଅନୁଭବ ନିଜ ହୃଦଗତ
ଦେଖି ବିଶ୍ୱ ସୃଷ୍ଟି କିମ୍ବା ସୁସଙ୍ଗତ ମତ ।
'ଅଛନ୍ତି ସେ ପରମାତ୍ମା ନିତ୍ୟ ବିରାଜିତ'
ଏ ସତ୍ୟ ବିଶ୍ୱାସ ଯେବେ କରେ ଦୃଢ଼ଚିତ୍ତ;
ତତ୍ତ୍ୱଭାବ ହୁଏ ତେବେ ଅନ୍ତରେ ପ୍ରକାଶ
ଉପାଧି-ରହିତ ବ୍ରହ୍ମ ଉପୁଜେ ବିଶ୍ୱାସ ।
ଅବ୍ୟୟ ଅକ୍ଷୟ ନିତ୍ୟ ଆତ୍ମତତ୍ତ୍ୱ ଭାବ
ଅନୁକ୍ଷଣ ଅନୁଭବ ହୁଏ ତାର ଲାଭ ।
ହୃଦରୁ ପୋଛିତ ଯେତେ କାମନାନିଚୟ
ତତ୍ତ୍ୱଭାବ ଲଭେ ହୃଦୁଁ ଯାଏ ସବୁ କ୍ଷୟ ।

ଏ ମର ସଂସାରେ କେବେ ମାନବ ଅମୃତ
ଲଭେ ବ୍ରହ୍ମାନନ୍ଦ ବ୍ରହ୍ମେ ହୁଏ ଏକୀଭୂତ ।
'ମୁଁ' 'ମୋର' ମମତାମୟ ହୃଦଗ୍ରନ୍ଥି ତସ୍ୟ
ହୁଏ ଯେବେ ଛିନ୍ନ ଭିନ୍ନ ତୁଟେ ଭବନ୍ଧସ୍ୟ ।
ଅଜ୍ଞାନ ଜଡ଼ତା ମୋହ ଦୂରେ ଅପସରେ
ବ୍ରହ୍ମ-ଆତ୍ମା ଏକଭାବ ବାହ୍ୟ ଅଭ୍ୟନ୍ତରେ ।
ମର୍ତ୍ତ୍ୟଲୋକେ ମର ଦେହେ ମାନବ ଅମୃତ
ଏ ପରମ ଉପଦେଶ ବେଦାନ୍ତ ନିଃସୃତ ।
ପ୍ରସରିଛି ହୃଦୁଁ ନାଡ଼ୀ ଏକୋତ୍ତର ଶତ
ତା ମଧ୍ୟେ ସୁଷୁମ୍ନା ଊର୍ଦ୍ଧ୍ୱ ବ୍ରହ୍ମରନ୍ଧ୍ର ଗତ ।
ଜ୍ଞାନବଳେ ଜୀବନ୍ମୁକ୍ତ ନ ହୁଏ ଯେ ନର
ଉପାସନା ଅନୁସାରେ ପାଏ ଲୋକାନ୍ତର ।
ମରଣେ ଯେ ଊର୍ଦ୍ଧ୍ୱେ ଯାଏ ସୁଷୁମ୍ନା ଆଶ୍ରୟେ
ବ୍ରହ୍ମଲୋକେ ଅମୃତତ୍ୱ ଲଭେ ସେ ନିର୍ଭୟେ ।
ଭିନ୍ନ ଭିନ୍ନ ଲୋକେ ଯାଏ ଅନ୍ୟ ନାଡ଼ୀ ଯୋଗେ
ନିଜ କର୍ମ ଅନୁରୂପେ ସୁଖ ଦୁଃଖ ଭୋଗେ ।
ବ୍ରହ୍ମତତ୍ତ୍ୱ କଥା ଯେତେ କଲି ମୁଁ ପ୍ରଚାର
ଶୁଣ ନଚିକେତ, ଏବେ ସେ ସବୁର ସାର ।
ପ୍ରାଣିଗତ ହୃଦପଦ୍ମେ ସଦା ବିଦ୍ୟମାନ
ଅନ୍ତରାତ୍ମା ପୁରୁଷ, ସେ ଅଙ୍ଗୁଷ୍ଠ ପ୍ରମାଣ ।

ଗୁଞ୍ଜଗର୍ଭେଁ ମଞ୍ଜି ସମ ସେ ପୁରୁଷେ ଭ୍ରମେ
ନିଜ ଦେହୁଁ ଭିନ୍ନ କର ଧୈର୍ଯ୍ୟ ଶମ ଦମେ ।
ସେ ଅନ୍ତର୍ଯ୍ୟାମୀଙ୍କୁ ଶୁଦ୍ଧ ବ୍ରହ୍ମ ବୋଲି ଜାଣ
ସେହି ବିଶ୍ୱଆତ୍ମା, ସେହି ସର୍ବ ପ୍ରାଣୀ ପ୍ରାଣ ।"

ଯମରାଜା କହିଲେ ସେ ବ୍ରହ୍ମତତ୍ତ୍ୱଜ୍ଞାନ
କହିଲେ ଯେ, ଯୋଗଫଳ ସାଧନ ବିଧାନ,
ବୁଝି ହୃଦେ ଅନୁଧ୍ୟାଇ ସେ ତତ୍ତ୍ୱ ସକଳ
ହେଲେ ନଚିକେତା ଶୁଦ୍ଧ ନିର୍ଦ୍ଦୋଷ ନିର୍ମଳ ।
ଅବିଦ୍ୟାର ମୋହବନ୍ଧ ଗଲା ହୃଦୁଁ ତୁଟି
ଉଠିଲା ଅନ୍ତରେ ପୂର୍ଣ୍ଣ ଆତ୍ମତତ୍ତ୍ୱ ଫୁଟି ।
ମୁକ୍ତ ହୋଇ ନଚିକେତା ଗଲେ ମୃତ୍ୟୁ ପାରେ
ଆତ୍ମତତ୍ତ୍ୱ ଅନ୍ୟ ଯେହୁ ଜାଣିବେ ସଂସାରେ ।
ନଚିକେତା ସମ ସେହୁ ଲଭିବେ ମୁକତି
ହେବ ବ୍ରହ୍ମପଦ ପ୍ରାପ୍ତି, ଘୁଞ୍ଚିବ ଦୁର୍ଗତି ।

●

## ଚତୁର୍ଥ ବଲ୍ଲୀ

ଯମ ଠାରୁଁ ନଚିକେତା ଲଭି ବ୍ରହ୍ମଜ୍ଞାନ
ବାହୁଡ଼ି ମିଳିଲେ ଆସି ପିତୃ ସନ୍ନିଧାନ ।

ଅଚେତନ ପିଣ୍ଡେ ଯେବେ ଜାଗିଲା ଚେତନା
ଉଠି ପୁତ୍ର କଲେ ପିତୃଚରଣ ବନ୍ଦନା ।
ଜୀବନ୍ତ ତନୟେ ଦେଖି ପିତା ହରଷିତ
ଦରିଦ୍ର ପାଇଲେ ଯଥା ଚିରହୃତ-ବିତ୍ତ ।
"ଧନ୍ୟ ନଚିକେତା, ଧନ୍ୟ ତୋର ପୁଣ୍ୟରାଶି !
ଫିରି ଜୀଇଲୁ ବାବୁ ହୋଇ ମର୍ତ୍ତ୍ୟବାସୀ ।
ଦୈବବଳେ ପାଇଲୁ ତୁ ଜନମ ଆବର
ତୋର ଏ ଶରୀର ନୁହେଁ ନର କଳେବର ।
କହ ପୁତ୍ର, ଦେଖିଲୁ ତୁ କିସ ମୃତ୍ୟୁ ପରେ
କି କର୍ମେ କି ଫଳ ଜନ ଲଭେ ଯମଘରେ ?"
ଋଷିଗଣ ମଧ୍ୟେ ତହୁଁ ଯୋଡ଼ି ବେନିକର
ସବିନୟେ ନଚିକେତ କରନ୍ତି ଉତ୍ତର,
"ତବ ଆଜ୍ଞା ମାନି ପିତା ଗଲି ଯମାଳୟେ
ଦେଖିଲି ଶମନ-ସଭା ଅତି ଶୋଭାମୟ ।
ବିଶାଳ ସେ ସଭା ଦଶ ସହସ୍ର ଯୋଜନ
ନାନା ରତ୍ନେ ସୁଖଚିତ କନକ ବରଣ ।
ଦେଖି ମତେ ଯମରାଜା ଭୃତ୍ୟ ମୁଖ ଚାହିଁ
କହିଲେ ଆସନ ଆଣି ଶୀଘ୍ର ଦେବା ପାଇଁ ।
ତୁମ୍ଭର ସୁକୃତି ମତେ ଅର୍ଘ୍ୟାଦି ବିଧାନେ
ପୂଜିଲେ ସେ ଯମରାଜା ବହୁତ ସମ୍ମାନେ ।

ବହୁତ ଆଦର କଲେ ଯମ ଭୃତ୍ୟଗଣ
କହିଲି ମୁଁ ଜନ୍ତୁରାଣେ ବିନୟ ବଚନ,

'ତବ ପାଶେ ଉପଗତ ହୋଇଛି ମୁଁ ଆଜ
ଯହିଁ ମୋ ଉଚିତ ସ୍ଥାନ କହ ଧର୍ମରାଜ ।'

କହିଲେ ସେ ଯମ ମତେ, 'ମରି ନାହିଁ ଏବେ
ପିତା ତବ କହିଛନ୍ତି—ଦେଖ ଯମଦେବେ ।

ଅନଳପ୍ରତିମ ଋଷି କହିଲେ ଯେ କଥା
କାହାର କ୍ଷମତା ତାହା କରିବ ଅନ୍ୟଥା ।
ତେଣୁ ତୁମ୍ଭେ ଆସିଅଛ ଶମନ-ସଦନେ
ଦେଖିଅଛ ମତେ ଏବେ ଯାଅ ସ୍ୱ-ଭବନେ ।

ତୁମ୍ଭଙ୍କୁ ନ ଦେଖି ପିତା ଅତ୍ୟନ୍ତ କାତର
ଶୀଘ୍ର ଯାଅ ନଚିକେତ, ବିଳମ୍ବ ନ କର ।
ମୋ ପୁରର ଅତିଥି ତୁମ୍ଭ ଯାହା ଇଚ୍ଛା ମାଗ
ସାଦରେ ଏକ୍ଷଣେ ସବୁ ଦେବି ମହାଭାଗ !'
ଯମରାଜ ବାକ୍ୟ ମୁହିଁ କଲି ନିବେଦନ—
'ଆସିଅଛି ତବ ପୁରେ ହେ ଯମରାଜନ !
ଏ ଦେଶକୁ ଆସି କେହି ବାହୁଡ଼ି ନ ପାଏ
କରି ଅନୁଗ୍ରହ ଯେବେ କର ଜନ୍ତୁରାୟେ ।
ଲଭନ୍ତି ସୁକୃତବନ୍ତ ଜନେ ଯେ ଯେ ଦେଶ
ଦେଖିବି ସେ ସବୁ ଦେବ କର ହେ ଆଦେଶ ।'

ତହୁଁ ଯମ ବସାଇଲେ ମତେ ଦିବ୍ୟଯାନେ
ନିଜ ପୁରେ ବୁଲାଇଲେ ନେଇ ନାନା ସ୍ଥାନେ ।

ବସନ୍ତ ପ୍ରମୋଦେ ଯହିଁ ପୁଣ୍ୟବନ୍ତ ଜନ
ଦେଖିଲି ସବୁ ସେ ଦିବ୍ୟ ଗୃହ ନିକେତନ ।

ସର୍ବ ରତ୍ନ ସୁଶୋଭିତ ବିଚିତ୍ର ଗଠନ
ଉଜ୍ଜ୍ୱଳ ଅପୂର୍ବ ତେଜେ ସକଳ ଭବନ,

ଚନ୍ଦ୍ରମାମଣ୍ଡଳ ସମ ଶୁଭ୍ର ରମ୍ୟପୁର
ଯଥାସ୍ଥାନେ ଶୋଭେ ମଣି କଙ୍କିଣି ନୂପୁର ।

ବହୁତଳ ପ୍ରସାଦ ସେ ଅତି ଶୋଭାବନ
ପୁର ମଧ୍ୟେ ଗଳେ ପୁଣି ସର ଉପବନ ।

ମାଣିକ୍ୟ ବୈଦୁର୍ଯ୍ୟ ଝଳେ ରବ ପ୍ରଭା ସମ
ସ୍ୱର୍ଣ୍ଣ ରୌପ୍ୟ କାରୁକାର୍ଯ୍ୟ ଅତି ଅନୁପମ ।

ସ୍ଥାବର ବା ଅସ୍ଥାବର ଯାହା ସେ ଭବନେ
ସର୍ବେ ଯଥା ଝକମକ କାଳାର୍କ କିରଣେ ।

ସୁସ୍ୱଚ୍ଛ ବସନ କେତେ ସୁକୋମଳ ଶଯ୍ୟା
ହୋଇଅଛି ଶୈଳପରେ ଭକ୍ଷ ଭୋଜ୍ୟ ସଜ୍ଜା ।

ନାନା ଜାତି ଫଳ ଲତା ଯହିଁ ସୁଶୋଭିତ
ଫଳେ ଇଚ୍ଛା ଅନୁରୂପ ଫଳ ଅଗଣିତ ।

ବହେ କେତେ ନଦୀ, ଶୋଭେ ବାପୀ ପୁଷ୍କରିଣୀ
ଗିରି ଦେହୁଁ ବହେ କାହିଁ ସ୍ୱଚ୍ଛ ନିର୍ଝରିଣୀ ।

କାହିଁ ବହେ ଘୃତଧାର, କାହିଁ ଦୁଗ୍ଧଧାର
ଘର୍ଷଣେ ଯାନଜାଳେ ପୃଷ୍ଠ ପଥସାର ।

ଦେଖିଲ ଏପରି ବହୁ ଅପୂର୍ବ ଭୁବନ
ଅବଶେଷେ ଧର୍ମରାଜେ କଲା ନିବେଦନ,

'କହ ଦେବ, କ୍ଷଣେ ଏ ଯେ ସରିତ ନିବହ
ଘୃତ ଦୁଗ୍ଧ ସ୍ରୋତ ଯହିଁ ବହେ ଅହରହ ।

କାହା ଉପଭୋଗ ଲାଗି ସୃଷ୍ଟି ଏ ସକଳେ ?
ବୋଲେ ଯମ, 'ନଚିକେତ, ଶୁଣ ହେ ନିଶ୍ଚଳେ ।

କରନ୍ତି ଗୋରସ ଦାନ ଯେଉଁ ସାଧୁଜନ
ସେହି ଏକା ଏ ସରିତ ସମ୍ଭୋଗେ ଭାଜନ ।

ଯଥାବିଧି ଗୋ ପ୍ରଦାନ କରନ୍ତି ଯେ ନରେ
ପାଆନ୍ତି ସେ ଏଥୁଁ ଫଳ ଭୋଗ ଲୋକାନ୍ତରେ ।

ସୁଲକ୍ଷଣବନ୍ତୀ ଗାଈ ବୁଝି କାଳ ବିଧି
ଯୋଗ୍ୟପାତ୍ରେ ଦାନ ଦେଲେ ମିଳେ ସର୍ବ ସିଦ୍ଧି ।'

ନାନାବିଧ ଗୋଦାନରେ ନାନାବିଧ ଫଳ
ଅବଶେଷେ କହିଲେ ଯମ ବୁଝାଇ ସକଳ ।

ଗୋଦାନେ ଭୋଗଇ ନର ସ୍ୱର୍ଗେ ମହାସୁଖ
ଗୋଦାନେ କଦାପି ପିତା ନ ହୁଅ ବିମୁଖ ।

ଉପଯୁକ୍ତ ଗାଭୀ ଦିଅ ଉପଯୁକ୍ତ ଜନେ
ଗୋଦାନର ଫଳ ମୁଁ ତ ଦେଖିଲି ନୟନେ ।

ଗୋଦାନ ସମାନ ନୁହେ ଅନ୍ୟ ମୋର ମତେ
କରନ୍ତୁ ମାନବ ସର୍ବେ ଗୋସେବା ଜଗତେ ।”

ଇହ ପରକାଳେ ସୁଖ ଗୋସେବା, ଗୋଦାନେ
ଗୋଜାତିକୁ ପାଳ ଜନେ ସଦା ସାବଧାନେ ।



# ଗୋ-ମାହାତ୍ମ୍ୟ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ॥
ଓଁ ନମୋ ବ୍ରହ୍ମଣେ ଦେବାୟ ଗୋ-ବ୍ରାହ୍ମଣ ହିତାୟଚ
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ।

## ପ୍ରଥମ ଅଧ୍ୟାୟ

ଗୋମତୀ-ତୀରେ ପୁଣ୍ୟବନ । ଶୀତଳ ବହଇ ପବନ ॥
ବିରାଜେ ନାନାଜାତି ଦ୍ରୁମ । ଫୁଟଇ ବିବିଧ କୁସୁମ ॥
ମୃଗ ଶଶକ କୃଷ୍ଣସାର । କରନ୍ତି ସ୍ୱଚ୍ଛନ୍ଦେ ବିହାର ॥
ମୟୂର ହଂସ ଶୁକ ସାରୀ । କୋକିଳ ବସନ୍ତ-ବିହାରୀ ॥
ଅନେକ ଜାତି ବିହଙ୍ଗମ । କରନ୍ତି ସ୍ୱନ ମନୋରମ ॥
ନିର୍ମଳ ବହେ ନଦୀଜଳ । ବିକଶେ [illegible] ଶତଦଳ ॥
ନାହିଁ ଜନତା କୋଳାହଳ । ପବିତ୍ର ଶାନ୍ତ ସୁନିଶ୍ଚଳ ॥
ଦେଖିଣ ସେହି ବନଭୂମି । ଆଶ୍ରମ ବିରଚିଲେ ମୁନି ॥
ବେଦ ପୁରାଣେ ବିଶାରଦ । ସର୍ବଦା ଭକ୍ତି ଗଦଗଦ ॥
କରନ୍ତି ନାନା ହୋମବ୍ରତ । ଯୋଗ ଅଭ୍ୟାସେ ନିତ୍ୟ ରତ ॥
ଗୋମତୀ-ତୀରେ ପୁଣ୍ୟ ବନେ । ରହିଲେ ହରଷିତ ମନେ ॥
ମୁନିଙ୍କ ଶିଷ୍ୟ ବ୍ରହ୍ମବ୍ରତ । ଅତି ସୁଶୀଳ ଶୁଦ୍ଧବ୍ରତ ॥
ହୃଦରେ ବହି ଭକ୍ତି ପ୍ରୀତି । ଖଟନ୍ତି ମୁନି ପଦେ ନିତି ॥
ପୂଜାସାମଗ୍ରୀ ପୁଷ୍ପ ଜଳ । ଆଣନ୍ତି ଶୁଦ୍ଧ ନଦୀଜଳ ॥

ଚରନ୍ତି ପ୍ରତିଦିନ ଗାଈ । ଦୁହାଁନ୍ତି ବାଛୁରୀ ପିଆଇ ।
ଶିଷ୍ୟ ସେବାରେ ସୁପ୍ରସନ୍ନ । ମୁନି କରନ୍ତି ଅଧ୍ୟାପନ ॥
ବେଦ ପୁରାଣ ଇତିହାସ । କରନ୍ତି ନିୟତ ଅଭ୍ୟାସ ।
ସେ ଶିଷ୍ୟ ଅତି ବିଚକ୍ଷଣ । ଗୁରୁ ବଚନ ଅନୁକ୍ଷଣ ॥
କରନ୍ତି ଏକ ଲକ୍ଷ୍ୟେ ଧ୍ୟାନ । ଲଭିଲେ ବହୁ ତତ୍ତ୍ୱଜ୍ଞାନ ॥
ଦିନେ ସେ ନେଇଗଲେ ଗାଈ । ଅରଣ୍ୟେ ଚରାଇବା ପାଇଁ ॥
ଗାଈ ଚରାଇ ନଦୀକୂଳେ । ଶିଷ୍ୟ ବସିଣ ବୃକ୍ଷମୂଳେ ॥
ମନେ କରନ୍ତି ଆଲୋଚନା । ଏ ବିଶ୍ୱ ପ୍ରଥମ ସର୍ଜନା ॥
ତତ୍ତ୍ୱ ଚିନ୍ତାରେ ମନ ବୁଡ଼ି । ଗଲେ ସେ ଗାଈ କଥା ହୁଡ଼ି ॥
କ୍ରମେ ଦିବସ ଅବସାନ । ଶିଷ୍ୟର ହେଲା ବାହ୍ୟଜ୍ଞାନ ।
ଦେଖନ୍ତି ତହିଁ ନାହିଁ ଗାଈ । ଖୋଜିଲେ ନାନାଦିଗେ ଧାଇଁ ॥
ନ ପାଇ ଗାଈ ମନଦୁଃଖେ । ଗୁରୁଙ୍କ ପାଶେ ଶୁଷ୍କ ମୁଖେ ॥
ମିଳଣ କହିଲେ ସକଳେ । ମୁନି ମନରେ କ୍ଷୋଭ କଲେ ॥
ସେ ଗୁରୁ ଶିଷ୍ୟେ ବେନି ଜଣେ । ଆଶ୍ରମ ସନ୍ନିକଟ ବଣେ ॥
ଖୋଜିଲେ ବହୁତ ନିରେଖି । ଫେରିଲେ ଗାଈକି ନ ଦେଖି ॥
ସେ ରାତି କଲେ ଉପବାସ । ମନେ ପାଇଲେ ଅତି ତ୍ରାସ ।
ସେ ଗାଈ ଆଶ୍ରମର ଧନ । ତାଠାରେ ମୁନିଙ୍କ ଜୀବନ ।
ତାପସ-ପତ୍ନୀ ପତିବ୍ରତା । ସତତ ଗୋ-ସେବା-ନିରତା ॥
ମଣ୍ଡ ତଣ୍ଡୁଳ କୁଣ୍ଡା ଘାସ । ଗାଈକି ନ କରାଇ ଗ୍ରାସ ॥
କରନ୍ତି ନାହିଁ ସେ ଭୋଜନ । ଗାଈ ନ ଦେଖି ଅବସନ୍ନ ॥
ବାଛୁରୀ ଛାଡ଼େ ହମ୍ବାନାଦ । ତାପସ ମଣିଲେ ପ୍ରମାଦ ॥
ଦୟାଳୁ ଗୁରୁ ଗୁରୁନାରୀ । ସେ ଗୁରୁଭକ୍ତ ବ୍ରହ୍ମଚାରୀ ॥
କାଟିଲେ ତିନିହେଁ ରଜନୀ । ଉଦୟ ହୋନ୍ତେ ଦିନମଣି ॥
ଗୁରୁଙ୍କ ଅନୁମତି ପାଇ । ଗଲେ ସେ ଶିଷ୍ୟ ଖୋଜି ଗାଈ ॥
ତାପସ କଲେ ନିତ୍ୟକୃତ୍ୟ । ବ୍ରାହ୍ମଣୀ ଶୋକ-ଅଭିଭୂତ ॥
ସେ ପତିପତ୍ନୀ ବେନି ଜଣ । ନ କଲେ ସେ ଦିନ ଭୋଜନ ॥

. ପିଇଲେ ନାହିଁ ମୁଠା ଜଳ । ବାହୁଡ଼ି ରହିଲେ ସକଳ ॥
ରହିଲେ ଶିଷ୍ୟ ବାଟ ଚାହିଁ । ନ ଆସେ ଶିଷ୍ୟ ଅବା ଗାଈ ॥
ସେ ଦିନ ଗଲେ ଉପବାସ । ମନରେ ଜନ୍ମିଲା ତ୍ରାସ ॥
ନାହିଁ ବା ଗାଈ ନାହିଁ ଶିଷ୍ୟ । ଚିନ୍ତିଲ ଏକ ଅହର୍ନିଶ ॥
ଏପରେ ଦ୍ୱିତୀୟ ଦିବସ । ତଥାପି ରହିଲେ ତାପସ ॥
ଗାଈ ନାହିଁ କି ଶିଷ୍ୟ ନାହିଁ । ସେ ପତିପତ୍ନୀ ଚିନ୍ତି ମନ୍ଦି ॥
ରହିଲେ ଚିର ଉପବାସେ । ଏପରି ବହୁଦିନ ମାସେ ॥
ନାଚରେ କାଟନ୍ତି ସେ ଦିନ । ନ ଖାଇ ହେଲ ତନୁ କ୍ଷୀଣ ॥
ମୁନି ଜାଣିଲେ ଯୋଗଧ୍ୟାନେ । ନାହିଁ ସେ ଧେନୁ ଆଉ ପ୍ରାଣେ ॥
ପତ୍ନୀ ପୁଚ୍ଛନ୍ତି ଅଶ୍ରୁ ଛାଡ଼ି । କହ କି ଆସେ ଭ୍ରମ ମନେ ॥
ଜୀବନେ ଅଛନ୍ତି କି ଗାଈ । ବ୍ରହ୍ମବୃନ୍ଦ ବା ନେଲ ନାହିଁ ॥
କହୁତ କହାନେ ତରୁଣୀ । ସ୍ୱାମୀଙ୍କି ପୁଚ୍ଛେ ପୁଣି ପୁଣି ॥
ଦେଖିଣ ପତ୍ନୀ ଘୋରବ୍ୟଥା । କହିଲେ ସବୁ ମନକଥା ॥
କପାଳ କାଢ଼ୁ ଛକଲେ । ଦିଶୁଛି ମୋତେ ଯୋଗବଳେ ॥
କେ ମାରୁ ଅବା କେହି ଖାଉ । ଧେନୁ ଜୀବନେ ନାହିଁ ଆଉ ॥
ଶିଷ୍ୟ ଆସିବ ଫେରି କାଲି । କି ପ୍ରୟୋଜନ ଆଉ ଭାଳି ॥
ଶୁଣି ଏ ଦାରୁଣ ବଚନ । ସେ ତପୋନାରୀ ଅଚେତନ ॥
ମାସୁ ଅଧିକ ଉପବାସ । ନାହିଁ ଶରୀରେ ପଳେ ମାଂସ ॥
ରହିଛି ମାତ୍ର ଅସ୍ଥିଚର୍ମ । କରନ୍ତି ପୁଣି ଯଥା କର୍ମ ॥
ନାହିଁ ଦେହରେ ତିଳେ ବଳ । ହେଲେ ସେ ବିଷାଦ-ବିହ୍ୱଳ ॥
ତଳେ ପଡ଼ିଲେ ମୂର୍ଚ୍ଛିତ । ବ୍ରାହ୍ମଣ ଅତ୍ୟନ୍ତ ଚିନ୍ତିତ ॥
ଶୀତଳ ଜଳ ଦେଲେ ଶିରେ । ଝିଞ୍ଚିଲେ ବ୍ୟଜନେ ସୁଧୀରେ ॥
ବ୍ରାହ୍ମଣୀ ପାଇଲେ ଚେତନ । ସକଳେ କରନ୍ତି ରୋଦନ ॥
ମୁନି କରନ୍ତି ମନସ୍ତାପ । ହେଲା ଗୋ-ହତ୍ୟା ମହାପାପ ॥
କ୍ଷୁଧାରେ ପ୍ରହାଇଲେ ଗାଈ । ରକ୍ଷା ନ ଦେଲୁ ପାଦାନ୍ତ ॥
• ବ୍ରାହ୍ମଣୀ ନିଷ୍ଠାଶୌଚ ସାରି । ଆଣି ଗୋମୟ ନମସ୍କାରି ॥

ରଖିଲେ ସ୍ୱାମୀ ପୂଜାସ୍ଥଳେ । ବନ୍ଦିଲେ ତାଙ୍କ ପଦତଳେ ॥
ମକର ମାସ ଚାହାନ୍ତିଆ । ଶୀତ ପ୍ରକୋପେ କମ୍ପେ ହିଆ ॥
କ୍ଷୁଧାରେ ଅବସନ୍ନ କାୟା । ସ୍ୱାମୀ ଚରଣେ ବିପ୍ରଜାୟା ॥
ତେଜିଲେ ଅକସ୍ମାତେ ପ୍ରାଣ । ଗାଈ ବତ୍ସକୁ କରୁ ଧ୍ୟାନ ॥
ଶୁଣିଲେ ମୁନି ଜ୍ଞାନବଳେ । ଦୁନ୍ଦୁଭି ନାଦ ନଭସ୍ଥଳେ ॥
ଦେଖିଲେ ଦେହୀ ଗଲେ ରଥେ । ପୁଷ୍ପ ପଡ଼ଇ ତାଙ୍କ ପଥେ ॥
ସବତ୍ସା ଧେନୁ ଶତ ଶତ । ଚଳନ୍ତି ସେ ରଥ ଅଗ୍ରତ ॥
ଦେଖିଣ ମୁନି ତୁଷ୍ଟ ଚିତ୍ତେ । କହିଲେ ଧନ୍ୟ ଅନଢତେ ॥
ତୁମ୍ଭର ପତିବ୍ରତାପଣ । ଗୃହିଣୀ ବିହିତ ସାଧନ ॥
ଗୋରୁ ଅତିଥି ଦ୍ୱିଜାବଧି । ଲଭିଲ ଆଜ ପୂର୍ଣ୍ଣସିଦ୍ଧି ॥
ନିଜ ସୁକୃତ କର୍ମଫଳେ । ବସ ସ୍ୱରଗେ ସୁନିଷ୍ଠଳେ ॥
ଗୋ ସେବା ବ୍ରତ ପୁଣ୍ୟରାଶି । ତୁମ୍ଭ ମରଣୁ ବଶୁବାସୀ ॥
ଶିଖି ଲଭନ୍ତୁ ସ୍ୱର୍ଗ ବାସ । ଗୀତେ ଭଣିଲ ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୋଭବନସ୍ଥା ଅନାହାରେ
ଋଷିଦେହୀ ପ୍ରାଣ-ବିୟୋଗେ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ

ପଡ଼ିଛି ବ୍ରାହ୍ମଣୀଙ୍କ ଶବ । ମୁନି କରନ୍ତି ବ୍ରହ୍ମ ସ୍ତବ ॥
ଅନପ ଜଡେ ଦିନକର । ଶିଷ୍ୟ ମଥାରେ ମାର କର ॥
ଅତି ବ୍ୟଥିତ ମନସ୍ତାପେ । ବ୍ୟାକୁଳ କରୁଣ ବିଳାପେ ॥
ଅଙ୍ଗ ଅବଶ ପଥଶ୍ରମେ । ପ୍ରବେଶ ହୋଇଲେ ଆଶ୍ରମେ ॥
ଆଶ୍ରମେ ଦେଖି ବିସ୍ମିତ । ହେଲେ ସେ ଶୋକବିଜଡ଼ିତ ॥

ନରେଣ ଗୁରୁପତ୍ନୀ ଶବେ । କାତରେ ରହିଲେ ମାରବେ ॥
ସାରନ୍ତେ ଗୁରୁ ଉପାସନା । କରଣା ଚରଣ ବନ୍ଦନା ॥
ଉଗ୍ର ସେ ହେଲେ ମନଦୁଃଖେ । ବଚନ ନ ସ୍ଫୁରଇ ମୁଖେ ॥
କହନ୍ତି ଗୁରୁ ଶିଷ୍ୟ ଶୁଣି । କରୁଛ ଶୋକ କାହିଁ ପାଇଁ ॥
ଆଗହୁଁ ଜାଣିଛୁ ମୁଁ ଧ୍ୟାନେ । ଆଶ୍ରମ ଧେନୁ ନାହିଁ ସ୍ଥାନେ ॥
ଏ ତବ ଗୁରୁପତ୍ନୀ ସତୀ । ଧେନୁ ହରଣ ଶୋକେ ଅତି ॥
ନ କଲେ ପାନ ବା ଭୋଜନ । ହରାଇ ଅଛନ୍ତି ଜୀବନ ॥
ତୁମ୍ଭେ ଆସିବା ତତ୍କ୍ଷଣେ । ଚଳିଲେ ବଢ଼ ମୋ ଚରଣେ ॥
ଯାହା ହେବାର ସେତେବେଳେ । ହେଉଛି ବଳେ କାଳଖେଳେ ॥
ଘଟଣାସ୍ରୋତ ଅବିରତ । ଚଳେ କାହାର ନ ଆୟତ୍ତ ॥
ଅଧିକ ନ କର ବିଳାପ । କଷ୍ଟ ଦେଖିଲି ବଡ଼ ବାପ ॥
କାହିଁ ବା ଥିଲ ଏତେ ଦିନ । ଶ୍ରମେ ହଣଇ ତନୁକ୍ଷୀଣ ॥
ଶିଷ୍ୟ କହଇ ଯୋଡ଼ି କର । ଯାହା ଦେଖିଲି ମୁନିବର ॥
ଶୁଣିଲେ ହୃଦ ଯାଏ ଫାଟି । ଭୟରେ ନ ଫିଟଇ ପାଟି ॥
ତବ ଆଦେଶ ଘେନି ଶିରେ । ଖୋଜିଲି ବହୁ ନଗାଗ୍ରରେ ॥
ଏ ପୁଣ୍ୟବନ୍ତୁଁ ବହୁ ଦୂରେ । ଭ୍ରମିଲି ନାନା ପଲ୍ଲୀପୁରେ ॥
ଦେଖିଲି ନାହିଁ କାହିଁ ଗାଈ । ସନ୍ଧାନ ନ ମିଳିଲା କାହିଁ ॥
କପଣ ଫେରିବି ଆଶ୍ରମେ । ବହୁତ ଚିନ୍ତିଲି ମନେ ॥
ଗାଈର ନ କଲେ ସନ୍ଧାନ । ନିଶ୍ଚେ ମୁଁ ହରାଇବି ପ୍ରାଣ ॥
ପୁଣି ଭ୍ରମିଲି ଏ ଚିନ୍ତାରେ । ଅନେକ ସ୍ଥାନେ ଅନାହାରେ ॥
ବଣ ପଡ଼ିଆ ହାଟ ଗାମ । ଦେଖିଲି ବୁଲି ଅବିଶ୍ରାମ ॥
ଭ୍ରମିଲି କୋଡ଼ିଏ ଦିବସ । କ୍ଷୁଧାରେ ଶରୀର ଅବଶ ॥
ଦେଖିଲି ଶେଷେ ଏକ ସ୍ଥାନେ । ନିଷ୍ଠୁର କଂସାଇ ଦୋକାନେ ॥
ଝୁଲଇ ଊର୍ଦ୍ଧ୍ୱେ ଗାଈମୁଣ୍ଡ । ତଳେ ବସିଛି ମାଂସ କୁଣ୍ଡ ॥
କଂସାଇ କୁଟେ ହାଡ଼ମାନ । ରକତେ ବୁଡ଼ିଛି ସେ ସ୍ଥାନ ॥
କଂସାଇ ପିଲା ଧରି ଛୁରି । ନିକଟେ କାଟଇ ବାଛୁରି ॥

ପଡ଼ିଛୁ ଅନ୍ତ ଲୋମ ତମ । ଦେଖି ହେଲା ମୋ ମଥାଭ୍ରମ ॥
ସ୍ୱର୍ଗି ମୁଁ ନ ପାଇଲି ସତ୍ତ୍ୱ । ଅଜ୍ଞାନେ ପଡ଼ିଗଲି ମତ୍ତ୍ୱ ॥
ପୁଣି କ୍ଷଣକେ ଚେତା ପାଇ । ବସ୍ତ୍ରରେ ଏ ମୃତକ ଗାଈ ॥
ହେବ ବା ଆନ ଅନ୍ୟ ପଶୁ । ଶୋକ ଅଧୈର୍ଯ୍ୟ ମୋହବଶୁଁ ॥
ପୃଚ୍ଛିଲି ସଂଧାନକ ଯାଇ । ତୁମେ କି ଜାଣ୍ ଅଛ ଗାଈ ॥
ଦୁଷ କଷ୍ଟ ଦେଖି ମତେ ସ୍ୱର୍ଗି । ଦର୍ଶନେ କହିଲ ବୁଝାଇ ॥
ଗୋରୁ ହୁଡ଼େ ତ ଅଶ୍ଚ ଜଣ । ଛଦ୍ମେ ପଶୁରେ ବ୍ରାହ୍ମଣ ॥
ଦେଖନ୍ତୁ ଦୁଇ ଆଖି ଖୋଲି । ପଶୁରୁ ଆହ୍ଲାଦ କି ବୋଲି ॥
ତହୁଁ ମୁଁ ଗମିଲି ତେଣେ । କର୍ମ ଛୋଡ଼ିଲା ତାର ମନ ॥
କ୍ରୋଧ ନ କର ଶୁଣ ଭାଇ । ମୋ ମନେ କଷ୍ଟ ହୃଦ ନାହିଁ ॥
ମୁଁ ବ୍ରହ୍ମହତ୍ୟା ଥାଏଁ ବନେ । କେବେ ଦେଇ ହେଲେ ମୋ ନୟନେ
ଗୋହତ୍ୟା ଦୃଶ୍ୟ ଆସି ନାହିଁ । ତେଣୁ ମୁଁ ପଶୁଚଳି ଭାଇ ॥
ଏ ଚାଣ୍ଡ ବଳଦ କି କଥ । କର ମୋଠାରେ ଅନୁଚିତ ॥

## ଘାତକ ଜବାବ

କିନ୍ତୁ ତ ତୁମେ ଥାଅ ବନେ । ଏଥି ଅଇଲ କି କାରଣେ ॥
ଏ ସବୁ ତସ୍କର କପାଇଁ । ବଞ୍ଚିଲ ଭୁଲେ ଏହା ଗାଈ ॥
କି ଅବା ତୁମେ ଗୁପ୍ତ ଚର । ମନରେ କରୁଛ ବିଚାର ॥
ଆସିଛ ଏ ଗାଈ ନେବାଇ । ମୋଠାରୁ କଥା ନେବା ପାଇଁ ॥
ପଚାର ମତେ କହଁ କାଇ । ଛଦ୍ମେ ଡାକ ଭାଇ ଭାଇ ॥
ତହୁଁ ମୁଁ ଧକଳ ବୃତ୍ତାନ୍ତ । କହିଲି ତାକୁ ଆଦ୍ୟ ପ୍ରାନ୍ତ ॥
ଶୁଣି ମୋଠାରୁ ସବୁକଥା । ହେଲା ତା ମନେ ଗୁରୁବ୍ୟଥା ॥
ଧେନୁ ପ୍ରାପ୍ତିର ବିବରଣ । କଲା ସେ ବସ୍ତ୍ରର ବର୍ଣ୍ଣନ ॥
ସଂକ୍ଷେପେ କହେଁ ଗୁରୁଦେବ । ଅଧିକ କହିଲେ କି ହେବ ॥
ସନ୍ତାପ ଅନ୍ତରେ ଥାଇକା । ବସିଲେ ସ୍ୱର୍ଗେ ଗୋଷ୍ଠବକା ॥

ବ୍ରାହ୍ମଣ ଆଦି ଯେତେ ଜାତି । ଗୋରୁ ଜଗସ୍ତେ ଛନ୍ତି ମାତି ॥
ବିଲରେ କରୁଛନ୍ତି ହଳ । ସରିଲେ ସେ ବଳଦ ବଳ ॥
ବିକନ୍ତି ବୃଦ୍ଧକାଳେ ହାଟେ । କଂସାଇ କିଣିନେଇ କାଟେ ॥
ଗୋ ସେବା ନ କରନ୍ତି ନର । ସରବେ ଚଷନ୍ତି ଗୋଚର ॥
ଧେନୁ ନ ପାଇ ତୃଣଜଳ । କଙ୍କାଳ ମାତ୍ର ଟଳ ଟଳ ॥
ଗୋରୁଙ୍କୁ ନ ଦେଇ ଭୋଜନ । ନିଷ୍ଠୁରେ ଖାଉଛନ୍ତି ଜନ ॥
ଗୋ-ବୃଷ ନ ପାଇ ଆହାର । ହେଲେଣି ଅତି ନାରଖାର ॥
ଧେନୁ ବଳଦ ବୃଷ ଯେତା । ଢଳେଣି ସକଳେ ଘାତକା ॥
କଂସାଇ ଗୋରୁ ବଧ କରେ । ଦେଖନ୍ତି ସମସ୍ତେ ନେତ୍ରରେ ॥
ତଥାପି ଅଳ୍ପ ଧନ ପାଇ । ବିକନ୍ତି କଂସାଇକି ଗାଈ ॥
ଆଦର ଯେତେନେତ ଭକତ । ନାହିଁ ତାହାର ଗୋରୁ ପ୍ରତି ॥
ଗୋମାତା ନରଙ୍କୁ ଯେ ଦେବତା । ନାହିଁ ଆଜ ଏ ଶାସ୍ତ୍ରକଥା ॥
ନେକଟେକ ଚଣ୍ଡାଳ ପାଷଣ୍ଡ । ହସ୍ତେ ମାରନ୍ତି ଗୋରୁ ଷଣ୍ଢ ॥
ବିକନ୍ତି ନେଇ ତାଙ୍କ ଚର୍ମ । ଲୁପ୍ତ ହେଲଣି ଅର୍ଥ ଧର୍ମ ॥
ଶୁଣି ଏ ସବୁ ହରେଣ । ସ୍ମରଣ ମୋ ନ ଆସେ ବଚନ ॥
ଆଉର କହିଲା କଂସାଇ । ହାଟେ କିଣିଲି ଏ ଗାଈ ॥
ବ୍ରାହ୍ମଣ ଜଣେ ଦେଲା ବିକି । କହିଲା ବିକୁଛ କାହିଁକି ॥
ଏ ଗାଈ ନେଉଛ ଅଚ୍ଛି ଘର । ନାହିଁକି ଏହାର ବାଛୁର ॥
ଏଭଳି ବୁଢ଼ୀକିଆ ଗାଈ । ଖୋଜିଲେ କାହିଁ ତ ନ ପାଇ ॥
କାହୁଁ ପାଇଛ ଏହୁ ଗାଈ । [illegible] ଅବା ଆଣିଛି କେଉଁଠାଇ ॥
କପଟ ନ କର ବ୍ରାହ୍ମଣ । କହିଲ ବୁଢ଼େ ସ୍ନେହାପନ ॥
କେଜାଣି କାହାର ଏ ଗାଈ । ଗଲା ମୋହର କ୍ଷେତ ଖାଇ ॥
ବାଛୁର ନ ଥିଲା ସଙ୍ଗରେ । ବାନ୍ଧି ରଖିଲି ଆଣି ଘରେ ॥
ରହିଲା ଅନେକ ଦିନର । କେହୁ ନ ଗଲା ଖୋଜି ଗାଈ ॥
ତେଣୁ ମୁଁ କରୁଛି ବିକ୍ରୟ । କିଣ ନ କର ମନେ ଭୟ ॥
ତୁମେ ତ ଭୁଞ୍ଜିବ ନିକାଶ । କରି ଭକ୍ଷଣ ଏହା ମାଂସ ॥

ବ୍ରାହ୍ମଣଠାରୁ ଶସ୍ତା ପାଇ । କିଣି ମୁଁ ଛାଡୁଛି ଏ ଗାଈ ॥

ସୂତ ଉବାଚ

ନ କହ ମତେ କିଛି ଆଉ । ଶୀଘ୍ର ମୋର ଏ ଗାଈ ଥାଉ ॥
ଗୋ- ଜାତି ଦୁର୍ଦ୍ଦଶା ଏମନ୍ତ । ଅଛି କେମନ୍ତେ ବସୁମତୀ ॥
ହତ୍ୟା ନିମନ୍ତେ ଗୋ-ବଂଶ । ହେଲାଣି ଧର୍ମମୂଳ ନାଶ ॥
ଏତେକ କହି ସୂତ ଶ୍ରେଷ୍ଠେ । ନବେଦେ ରହିଲେ ମଉନେ ॥
ଶିଷ୍ୟ ରହିଲେ ଶଙ୍କାଚିତ୍ତେ । ଭଣିଲା ଦୀନ ଗୋପ ଗୀତେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ସୂତ ସମୀପେ ଶିଷ୍ୟ ଗୋହରଣ କଥା
ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ

ସଉନକ ଅନ୍ତେ ତପୋଧନ । ଘଷିଲେ ପିଞ୍ଚାଇ ନୟନ ॥
ଶୁଣ ହେ ବଳ ବ୍ରହ୍ମବୃନ୍ଦ । ସ୍ଥିର କରିଛି ମୁଁ ବିଚାର ॥
ନାହିଁ ଏ ଦେହେ ପ୍ରୟୋଜନ । ମରିବି କରି ଅନଶନ ॥
କାଳର ଗତି ଭୟଙ୍କର । ପାପେ ସନ୍ତୁଷ୍ଟ ସବୁ ନର ॥
ବ୍ରାହ୍ମଣ ସର୍ବେ ବିକେ ଗାଈ । ମ୍ଳେଚ୍ଛ ଘାତକେ ଧନ ପାଇ ॥
ନିଜସ୍ୱ ପରସ୍ୱ ନଦାରେ । ଧର୍ମ କି ଅଛି ଏ ସଂସାରେ ॥
ଅପରାପର ବର୍ଣ୍ଣମାନେ । ନ ରହି ବିହିତ ବିଧାନେ ॥
କରନ୍ତି ଯେବେ ଗୋ-ବିଚ୍ଛେଦ । ଜାଣ ଏ ବଡ଼ପାତ ସମସ୍ତ ॥
ଗୃହସ୍ଥ ଯେବେ ଗୋରୁ ପ୍ରତି । ନ କରେ ଆଦର ଭକତି ॥
ଗୋ-ସେବା ନ କରନ୍ତି ନାରୀ । ବାଞ୍ଛନ୍ତି ନାହିଁ ଭୂଷଣ-ଭାର ॥

ପୋଷନ୍ତି ନାହିଁ ସେ ଗୃହୀକ । ଆସିଲା ଏ ଭଷମ କାଳ ॥
ଏ କଳିଯୁଗେ ଲୋକଗଣ । ଲୋଡ଼ନ୍ତି ଆପଣା ମରଣ ॥
ଯାଉଛି ସବୁ ଧର୍ମ ନାଶ । ଦେବତା ଗୋରୁରେ ବିଶ୍ୱାସ ॥
ଚଳାଉଥିଲା ଧର୍ମ ନାବ । ସେ ଏବେ ଘଟିଲାଁ ଅଭାବ ॥
ଏ ଶେଷ ସମସ୍ତ ପ୍ରବେଶ । ଏଣିକି ମହା ଘୋର କ୍ଲେଶ ॥
ଗୋରୁ ଯେ ସାକ୍ଷାତେ ଦେବତା । ଜୀବର ହରତା କରତା ॥
ଗୋରୁ ଅମୃତ ରସଦାତା । ଜଗତ ଜନ ପିତାମାତା ॥
ଭବ ସଂସାରେ ମହାଧନ । ମରଣେ ମୁକତି କାରଣ ॥
ଏ ତଥ୍ୟ ହୁଡ଼ିଲେଣି ଲୋକେ । ମରିବେ ଏବେ ରୋଗଶୋକେ ॥
ଦେଖି ଲୋକଙ୍କରେ ଏ ବେଭାର । ଗୋ-ଜାତି ପ୍ରତି ଅତ୍ୟାଚାର ॥
ଜାଣୁଛି ଏ ଘୋର ଦୁର୍ଗତି । ପାପେ ବୁଡ଼ିବ ବସୁମତୀ ॥
ଛାଡ଼ିବି ଏବେ କଳେବର । ବଞ୍ଚିବା ନୁହେଁ ଶ୍ରେୟସ୍କର ॥
ମୋର ଏ ପତ୍ନୀ ପତିବ୍ରତା । ଥିଲା ସତତ ଧର୍ମରତା ॥
ଥିଲା ତପୁର ସେବା ବ୍ରତେ । ସେ ଏବେ ଛାଡ଼ିଗଲା ମତେ ॥
ଆଶ୍ରମ ଧେନୁ ଲାଗି ନାରୀ । ମଲା ଏ ଜାଣ ବ୍ରହ୍ମଚାରୀ ॥
ଧେନୁ ଆଶ୍ରମୁଁ ଯିବା ହେତୁଁ । ରହିଲା ଜଳପାନ ହେତୁଁ ॥
ଭୂମେ ଆସିବା ପୂର୍ବକ୍ଷଣେ । ଗଲା ଏ ଅମର ଭୁବନେ ॥
ଗଲା ଅପୂର୍ବ ଦିବ୍ୟ ରଥେ । କୁସୁମ ବରଷିଲା ପଥେ ॥
ଏ ନାରୀ ଅତି ଭାଗ୍ୟବତୀ । ଥିଲା ତପସ୍ୟା ମୂର୍ତ୍ତିମତୀ ॥
ମୋ ତପ ଏହାର ସଙ୍ଗତେ । ସମାପ୍ତ ହେଲା ଏ ଜଗତେ ॥
ମୋ ଭଳା କ୍ଷଣେ ଧୈର୍ଯ୍ୟ ଧରି । ରହି ନ ପାରେ ଏ ସୁନ୍ଦରୀ ॥
ଏ ଏବେ ସ୍ୱର୍ଗଲୋକେ ଯାଇ । ଥିବ ମୋହର ବାଟ ଚାହିଁ ॥
ନ କର ବିଳମ୍ବ ଅଧିକ । ହେବି ମୁଁ ସେ ପୁର ପଥିକ ॥
ପୁଣି ଆଶ୍ରମ ଧେନୁ ବଧ । ହୋଇଛି ସେ ଅନ୍ୟ ଆପଦ ॥
ସେ ହତ୍ୟା ପାପ ଶିରେ ବହି । ଗୋ-ରକ୍ତେ ସିକ୍ତ ଦେହ ମହୀ ॥
ବଞ୍ଚି ରହିବା ଅକଲ୍ୟାଣ । ତେଜିବି ଯୋଗେ ଶୀଘ୍ର ପ୍ରାଣ ॥

ଶେଷବଚ୍ଛା ପାଇଁ ମୁକ୍ତି ଆଶେ । ରହିବ ପୁଣି ଉପବାସେ ॥
କଠୋର ତପସ୍ୟା ପାଳନେ । ଦେହ ଶୁଖିବ ଯୋଗାସନେ ॥
ଏହା ମୋ ମନେ ସୁନିଶ୍ଚୟ । ଏଥିରେ ନ ହେବ ସଂଶୟ ॥
ଶୁଣିଲି ମୋର ମନକଥା । ନ ପାଞ୍ଚ ବାବୁ ମର୍ମେ ବ୍ୟଥା ॥
କର ଲୌକିକ ବ୍ୟବହାର । ଏ ଗୁରୁପତ୍ନୀଙ୍କ ସତ୍କାର ॥
ମୋ ଆଶୀର୍ବାଦ ହେବ ଶିରେ । ପ୍ରସ୍ଥାନ କର ନିଜ ଘରେ ॥
ତୁମ୍ଭ ସେବାରେ ମୁଁ ପ୍ରସନ୍ନ । ସରିଛି ତୁମ୍ଭ ଅଧ୍ୟୟନ ॥
ଲଭିଛ ଶାସ୍ତ୍ରେ ପାରଗତା । ତୁମ୍ଭେ ସୁଜ୍ଞାନୀ ସୁବକ୍ତା ॥
ସାଧିବ ବୃତ୍ତି ମୋ ଉଦ୍ଦେଶ୍ୟ । କି ଆଉ କହିବି ବିଶେଷ ॥
ଶିଷ୍ୟ କହନ୍ତି ଯୋଡ଼ିହାତେ । ମୁଁ ଯେ ମଜ୍ଜିଲି ମହାପାତେ ॥
ମୋ ଦୋଷେ ହେଲା ଏ ଗୋବଧ । ଘଟିଲା ସମସ୍ତ ବିପଦ ॥
ଏ ଗୁରୁପତ୍ନୀ ସୁଲକ୍ଷଣୀ । ପ୍ରତ୍ୟକ୍ଷେ ଥିଲେ ମୋ ଜନନୀ ॥
ପାଳିଲେ ମତେ କି ଆଦରେ । ତନୁ ତେଜିଲେ ମୋ ଦୋଷରେ ॥
ଏକେ ଗୋ-ବଧ ମହାପାପ । ସ୍ତ୍ରୀ ବଧ ପାପେ ନାହିଁ ମାପ ॥
ତାପରେ ପୁଣି ଗୁରୁନାରୀ । ମୁଁ କି ହିପାପୁଁ ହେବି ପାରି ॥
ଆପଣ ମୋ ଜୀବନ ରକ୍ଷ । ଜାଣନ୍ତୁ ସ୍ୱତ ଜ୍ଞାନ-ଚକ୍ଷେ ॥
ମତେ ଠେଲି ଏ ଭବ ଜଳେ । ନିଜାରେ ଯିବ କତ୍ତ୍ୟସ୍ଥଳେ ॥
କିପାଇଁ ଏତେ ପାପ କରି । ରହିବି ମୁଁ ବା ଦେହ ଧରି ॥
ଏ ଯେ ଦୁସ୍ତର ପାପରାଶି । ଚାପିଛି ମତେ ଏବେ ଆସି ॥
ଏଥିରୁ କହ କି ପ୍ରକାରେ । ଉଦ୍ଧାର ପାଇବି ସଂସାରେ ॥
ସକଳ ଜଗ ମତେ ଶୂନ୍ୟ । ନାହିଁ ମୋହର ତିଳେ ପୁଣ୍ୟ ॥
ହେ ତପୋଧନ ଦୟା କରି । ଉପାୟ ମୋତେ କହ କରି ॥
ନ ହେଲେ ନିଜ ସଙ୍ଗେ ନିଅ । ସଦା ଚରଣ ସେବା ଦିଅ ॥
ବୁଦ୍ଧି ବିବେକ ମୋର ନଷ୍ଟ । ହୃଦେ ହେଉଛି ଗୁରୁ କଷ୍ଟ ॥
ଉଜ୍ଜ୍ୱଳ ଆଲୋକ ଦେଖାଅ । କର୍ତ୍ତବ୍ୟ ପଥ ମୋ ବତାଅ ॥

## ଗୁରୁ ଉବାଚ

ଶୁଣଲ ଶୁଦ୍ଧ ବ୍ରହ୍ମଚାରୀ । ଦେବ ସକଳ ପାପୁଁ ପାଶ ॥
ଏ ଯେ ଜଗତ କାଳକାରୀ । ଏଠାରେ କାହାର କ ବଶ ॥
ସମସ୍ତ କାଳର ଆୟତ୍ତେ । ଚଳନ୍ତି ନିଜ ନିଜ ପଥେ ॥
କରନ୍ତି ନିଜ କର୍ମ ଖେଳା । ମରନ୍ତି ଯେବେ ଆସେ ବେଳା ॥
ସ୍ଥାବରୁ ବ୍ରହ୍ମ ପର୍ଯ୍ୟନ୍ତେ । ଜନ୍ମ ମରଣ ଏକ୍ରମତେ ॥
ଲାଗିଛି ନିତ୍ୟ ଇହଲୋକେ । କାହିଁ ଅଧୀର ଦୁଃଖ ଶୋକେ ॥
ତୁମ୍ଭର ଯୌବନ ଆଗମ । ରୂପ ସ୍ୱଭାବ ଅନୁପମ ॥
ହୋଇଛ ଶାସ୍ତ୍ରେ ଧୁରନ୍ଧର । ଏବେ ଗୃହସ୍ଥାଶ୍ରମ କର ॥
ସଂସାରେ ରହି ନିଜ କର୍ମେ । ଲୋକଙ୍କୁ ପ୍ରବର୍ତ୍ତାଅ ଧର୍ମେ ॥
ଗୋ-ସେବା କର ଅନୁକ୍ଷଣ । ଗୋ-ହିତେ ବ୍ୟୟ କର ଧନ ॥
ଗୋ-ମୁଖେ ଦିଅ ହେ ଆହାର । ଗୋ-ସେବା ଲୋକରେ ପ୍ରଚାର ॥
ଗୋ-ରକ୍ଷା ଉପାୟ ବିଧାନ । ସୁଯୋଗ୍ୟ ପାତ୍ରେ ଧେନୁଦାନ ॥
କର ସନ୍ତତ ମନତୋଷେ । ଛଡ଼ିବ ଯହିଁ ହତ୍ୟା ଦୋଷେ ॥
ଏଣେ ସାଧିବ ଦେବ କାର୍ଯ୍ୟ । ହୋଇବ ଧନ୍ୟ ପୁଣ୍ୟ ଆର୍ଯ୍ୟ ॥
ବିତାଅ ନାହିଁ ଆଉ କାଳ । ଅଧିକ ମନରେ ନ ଭାଳ ॥
ଏପରି ଶବ ଏବେ ଦିଅ । ଗୋମଣ୍ଡ ଷ୍ଟରେ ଯାଇ ଦିଅ ॥
ଶଙ୍କର ଶାନ୍ତ ବେଦେ ସାର । ଆସ ମୋ ପାଶେ ବ୍ରହ୍ମଚାରୀ ॥
କରିବ ବ୍ରତ କର୍ମ ଶେଷ । ଦେବି ତୁମ୍ଭଙ୍କୁ ଉପଦେଶ ॥
ଗୋ-ତତ୍ତ୍ୱ ଗୋ-ମାହାତ୍ମ୍ୟମାନ । କରିବ କଣ୍ଠରେ ବ୍ୟାଖ୍ୟାନ ॥
ଆସିବ ଗୋ-ପ୍ରତି ମମତା । ପୂଜିବେ ଲୋକେ ଗୋ-ଦେବତା ॥
ଏ କାର୍ଯ୍ୟେ ତୁମ୍ଭ ପାପ କ୍ଷୟ । ହୋଇବ ଜାଣ ହେ ନିଶ୍ଚୟ ॥
ଗୁରୁ ଆଦେଶ ଘେନି ଶିରେ । ଶିଷ୍ୟ ଗୋମଣ୍ଡ ନଘଣ୍ଟାରେ ॥
କରି ବିହିତ କର୍ମ ଶେଷ । ଗୁରୁ ସମୀପେ ପରବେଶ ॥
ଯୋଗ ଯୁକତ ହୋଇ ମୁନି । ରହିଲେ କିଛି କ୍ଷଣ ତୁନି ॥

ଏମନ୍ତେ ଗୋ-ମହାତ୍ମ୍ୟ ଗାଥା । ଶିଷ୍ୟବତ୍ସଳ ଜ୍ଞାନଦାତା ।
କହିଲେ ଶାସ୍ତ୍ରରୁ ଉଦ୍ଧାର । ଶୁଣ ସକଳ ନରନାରୀ ।
ଯିବ ଏଥିରେ ପାପକ୍ଷୟ । ହେବ ସୁକୃତ ଭାଗ୍ୟୋଦୟ ॥
ମିଳବ ସୁଧେନୁ ସୁବାସ । କହେ ପାମର ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଶିଷ୍ୟ ବିଷାଦେ
ନାମ ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ

### ଗୁରୁ ଉବାଚ

ଗୋ-ଜାତି ମାହାତ୍ମ୍ୟ ବିସ୍ତାର । କେବା କହିବ ବୁଦ୍ଧିସାର ।
ଯାହାର ଶୃଙ୍ଗେ ପାଦ ଯାଏ । ଅଙ୍ଗେ ବସନ୍ତି ଦେବତାଏ ॥
ବେଦରେ ମହିମା ଯାହାର । ଗାଇଲେ ମୁନି ବାରମ୍ବାର ॥
ଅନନ୍ତେ ଦେଇଣ ଆଦୃତି । ଇନ୍ଦ୍ରାଦି ଦେବେ କଲେ ସ୍ତୁତି ॥
ହେ ଇନ୍ଦ୍ର ବର୍ଷ ସୁଧା ଜଳ । ହେଉ ଉଦ୍ଭିଦ ଫୁଲ ଫଳ ॥
ଗୋରୁ ଚରନ୍ତି ବନସ୍ତରେ । ଦିଅନ୍ତୁ ଦୁଗ୍ଧ ଘୃତ ଯାଗେ ॥
ଦସ୍ୟୁ ରାକ୍ଷସେ କର ନାଶ । ଗୋରୁଙ୍କୁ ଦିଅନ୍ତି ଯେ ତ୍ରାସ ॥
ବେଦ ବଚନେ ଲଭି ତୁଷ୍ଟି । ଇନ୍ଦ୍ର କରନ୍ତି ସୁଧା ବୃଷ୍ଟି ॥
ସତ୍ୟାଦି ଯୁଗେ ଏହି ମତେ । ଗୋ-ଜାତି ବଢ଼ିଲେ ଜଗତେ ॥
ମୁନି ଆଶ୍ରମେ ଧେନୁ ଧନ । କରନ୍ତି କାମନା ପୂରଣ ॥
ତେଣୁ ସେ କାମଧେନୁ ନାମେ । ଖ୍ୟାତି ଲଭିଲେ ତିନି ଧାମେ ॥
ଯଯାତି ଆଦି ନରଗଣ । କରି ଅସଂଖ୍ୟ ଧେନୁଦାନ ॥
ଅର୍ଜିଲେ ଅକ୍ଷୟ ଭାରତୀ । ପୁଣ୍ୟେ ପାଇଲେ ବସୁମତୀ ॥

ତ୍ରେତାରେ ରାମ ମହାରାଜ । ଗୋ-ବତ୍ସ ପାଳି କଲେ ରାଜ୍ୟ ॥
ଦ୍ୱାପରେ ନନ୍ଦେ ଦେବ ହରି । ଗୋପେ ମାନବଦେହ ଧରି ॥
କଲେ ଗୋକୁଳ ସ୍ଥିତ ଯେତେ । ତାହା ବା କହିବ ମୁଁ କେତେ ॥
ପୂର୍ବେ ଏପରି ମହାଜନ । ପାଳିଲେ ଆଦରେ ଗୋଧନ ॥
ତେଣୁ ଐଶ୍ୱର୍ଯ୍ୟ ସୁଖଭୋଗୀ । ଥିଲେ ସେ ସର୍ବଦା ନିରୋଗୀ ॥
ମରଣେ ଗଲେ ପୁଣ୍ୟସ୍ଥାନେ । ଅତି ଦୁର୍ଲ୍ଲଭ ଦେବଯାନେ ॥
ଗୋ-ଲୋକ ଦେବଲୋକ ପରେ । ସୁରଭି ଯେ ସ୍ଥାନେ ବିହରେ ॥
ସୁରଭି ସନ୍ତତି ଗୋ-ଜାତି । ତ୍ରିଲୋକେ ଲଭିଛନ୍ତି ଖ୍ୟାତି ॥
ନନ୍ଦେ ଶଙ୍କର ଗୋ-ଗୌରବେ । ବହନେ ବାନ୍ଧିଲେ ବୃଷଭେ ॥
ବେଦ ପୁରାଣ ଇତିହାସ । କରେ ଗୋ-ମାହାତ୍ମ୍ୟ ପ୍ରକାଶ ॥
ସେ ସର୍ବ ଶାସ୍ତ୍ର ପିତାମହ । ସଂକ୍ଷେପେ କରିଣ ସଂଗ୍ରହ ॥
ମହାଭାରତ ଯୁଦ୍ଧ ଶେଷେ । ଯୁଧିଷ୍ଠିରଙ୍କୁ ଉପଦେଶେ ॥
କହିଲେ ଜନ ଉପକାରେ । ଜନ୍ମ ତା ପ୍ରସ୍ତର ସଂସାରେ ॥
ତେବେ ଖଣ୍ଡିବ ଜନ୍ମ ପାପ । ବିନଷ୍ଟ ହୋଇବ ତ୍ରିତାପ ॥

## ଶିଷ୍ୟ ଉବାଚ

ହେ ଗୁରୁ କଲ ଅନୁଗ୍ରହ । କହିଲେ ଯାହା ପିତାମହ ॥
ଗ୍ରନ୍ଥୁ ପଢ଼ିଛି ସେ ତତ୍ତ୍ୱ । ତଥାପି ଲୋଡ଼ଇ ମୋ ଚିତ୍ତ ॥
ଶୁଣିବି ତବ ମୁଖଁ ବାରେ । କହିବ ଅପୂର୍ବ ପ୍ରକାରେ ॥
ଏହା ଯେ ଶେଷ ଉପଦେଶ । ବିସ୍ତାରି କହ ହେ ବିଶେଷ ॥
ଆଜ କି ମୋର ହେବ ଭାଗ୍ୟ । ତବ ଚରଣେ ମହାଭାଗ ॥
ବସି ସେ ଉପଦେଶାମୃତ । ଶୁଣି ହୋଇବି କୃତ୍ୟ କୃତ୍ୟ ॥
ଆଜ ଏ ଜନ୍ମେ ନାହିଁ ଦେଖା । ନ କର ଭୁଲିତେ ଉପେକ୍ଷା ॥
ଗୋ-ସେବା ମୋ ଜୀବନ ବାଞ୍ଛା । କରିବ ଦଅ ପୂର୍ଣ୍ଣ ଶିକ୍ଷା ॥
ତବ ଆଦେଶେ ତପୋଧନ । ଗୋ-ବ୍ରତେ ଦେବି ଏ ଜୀବନ ॥

ତେଣୁ ଗୋ-ଜାତି ହିତ କଥା । ଉପଯୁକ୍ତ ପାଳନ ବ୍ୟବସ୍ଥା ॥
ବର୍ଣ୍ଣେ କହ ହେ ତାପସ । ତୃପତ ହେଉ ମୋ ମାନସ ॥
ଏତେ କହି ସେ ଶିଷ୍ୟବର । ଧରିଣ ଗୁରୁଙ୍କ ପୟର ॥
ସାଷ୍ଟାଙ୍ଗେ ପଡ଼ିଲେ ଚରଣେ । ଗୀତରେ ଗୋପ ଦାସ ଭଣେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁପଦେ ଗୋ-ତତ୍ତ୍ୱ ଜ୍ଞାପନାୟ
ଶିଷ୍ୟ ନିବେଦନେ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ

### ଗୁରୁ ଉବାଚ

କୌରବ ପାଣ୍ଡବ ସମରେ । ଭୀଷ୍ମ ଆହତ ପାର୍ଥ ଶରେ ॥
ସମ୍ମୁଖେ ଶ୍ରୀଖଣ୍ଡିଙ୍କି ଦେଖି । ରଖିଲେ କୋଦଣ୍ଡ ଉପେକ୍ଷି ॥
ଭୀଷ୍ମ ଆଜନ୍ମ ବ୍ରହ୍ମଚାରୀ । ନାରୀ ବା ନାରୀରୂପଧାରୀ ॥
ଦେଖିଲେ ନ କରିବେ ରଣ । ଏହା ତାଙ୍କର ଦୃଢ଼ପଣ ॥
ତେଣୁ ସେ ନ ରହି ସମରେ । ଶୋଇଲେ ଶରଶଯ୍ୟାପରେ ॥
ଉତ୍ତରାୟଣ ପରବେଶେ । ଯିବେ ଇଚ୍ଛାରେ ସ୍ୱର୍ଗଦେଶେ ॥
ସଂଗ୍ରାମ ଅନ୍ତେ ଧର୍ମରାଜ । ଫେରି ପାଇଲେ ନିଜ ରାଜ୍ୟ ॥
ଆସିଲେ ପିତାମହ ପାଶେ । ଶାସନ ବିଧି ଶିକ୍ଷା ଆଶେ ॥
ସଙ୍ଗେ ଅନୁଜନ୍ମ ଭାଇ ଚାରି । ଯଦୁନନ୍ଦନ ଚକ୍ରଧାରୀ ॥
ବିଦୁର ଧୃତରାଷ୍ଟ୍ର ଆଦି । ଅନେକ ଋଷି ବ୍ରହ୍ମବାଦୀ ॥
ଭୀଷ୍ମେ ପୃଚ୍ଛିଲେ ଯୁଧିଷ୍ଠିର । ତୁମ୍ଭେ ତ ଗୁଡ଼କ ଶରୀର ॥
ଉତ୍ତରାୟଣ ପରବେଶେ । ତେଣୁ ଉଚିତ ଉପଦେଶେ ॥
ଦେଖାଅ ମତେ ଧର୍ମପଥ । ପୂରୁ ମୋହର ମନୋରଥ ॥

ସେ ଶାସ୍ତ୍ର ଜ୍ଞାନବନ୍ତ ଅତି । ଦେଖିଣ ଯୁଧିଷ୍ଠି ଭକତ ॥
କହିଲେ ନାନା ତତ୍ତ୍ୱମାନ । ପ୍ରବୃତ୍ତି ନିବୃତ୍ତି ସଦ୍‌ଜ୍ଞାନ ।
ଶାସନଂଶାନ୍ତ ରାଜଧର୍ମ । ଗୃହସ୍ଥାଶ୍ରମେ ଯେତେ କର୍ମ ॥
ସକଳ ଧର୍ମେ ଦାନ ସାର । ସର୍ବ୍ବିରେ ପର ଉପକାର ॥
ଦାନେ ଗୋଦାନ ଶ୍ରେଷ୍ଠ ଅତି । କହିଲେ ଶାସ୍ତ୍ର ମହାମତି ॥
ବୁଝାଇ ଗୋଦାନ ମହତ୍ତ୍ୱ । କହିଲେ ଯେତେ ଯେତେ ତତ୍ତ୍ୱ ।
ଶୁଣ ତା ମନ କରି ସ୍ଥିର । ଶୁଣିଲେ ଯଥା ଯୁଧିଷ୍ଠିର ।

## ଭୀଷ୍ମ ଉବାଚ

ହେ ଯୁଧିଷ୍ଠିର ନରପତି । ଗୋଦାନେ ମିଳଇ ଯେ ଗତି ।
କହୁଛି ଏବେ ତା ନିର୍ଣ୍ଣୟ । ଶୁଣ କରିଣ ଏକଲୟ ।
ଗୋ-ଜାତି ଉଦ୍ଭବ ବୃତ୍ତାନ୍ତ । କହିବି ଆଗେ ଶୁଣ ତାତ ॥
ସ୍ୱୟମ୍ଭୂ ବ୍ରହ୍ମା ଦକ୍ଷେ ରାଇ । କହିଲେ ପ୍ରଜାସୃଷ୍ଟି ପାଇଁ ॥
ତେଣୁ ସେ ଦକ୍ଷ ପ୍ରଜାପତି । ପ୍ରଜା ସୃଜନେ କଲେ ମତି ।
ନ କରି ବୃତ୍ତି ସୁବନ୍ଦୋବସ୍ତ । ପ୍ରଜା ସୃଜିବା ଅନୁଚିତ ॥
ଅମୃତ ଆଶ୍ରୟେ ଯେସନ । ସ୍ୱର୍ଗେ ବସନ୍ତି ଦେବଗଣ ।
ତେସନେ ସୁବୃତ୍ତି ଆଶ୍ରୟ । କରି ବଞ୍ଚିବେ ପ୍ରଜାଚୟ ॥
ଅଚର ଚରୁଁ ଶ୍ରେଷ୍ଠ ଚର । ଚରଙ୍କ ମଧ୍ୟେ ଶ୍ରେଷ୍ଠ ନର ।
ନରେ କରନ୍ତି ନାନାକର୍ମ । ଅବ୍ରତ ବୃତ୍ତି ଦାନଧର୍ମ ॥
ସେ ଫଳ ପାଇବେ ଅମୃତ । ତେଣେ ହୋଇବେ କୃତ୍ୟ କୃତ୍ୟ ॥
ତେଣୁ ଅମୃତ ସୃଷ୍ଟି ଆଶେ । ସେ ଦକ୍ଷ ପାଞ୍ଚିଲେ ମାନସେ ॥
ହୋଇଣ ଭୋର ଅଭିଭୂତ । ଆପେ ସେ ପିଇଲେ ଅମୃତ ।
ଅମୃତ ପାନେ ମୁଖେ ବାସ । ବାହାରେ ସୁଗନ୍ଧ ନିଃଶ୍ୱାସ ।
ନିଃଶ୍ୱାସୁଁ ସୁରଭି ଜନମ । ଅତି ସୁନ୍ଦର ଅନୁପମ ।
ସୁରଭି ଦକ୍ଷ ଆତ୍ମସୁତା । ଦେବ ମାନବ ସୁଖଭୂତା ॥

ସୁରଭି ଚତୁଁ ଯେତେ ଜାତ । ଗୋମାତା ବୋଲି ଲୋକେ ଖ୍ୟାତ
ହେଲେ ଅସଂଖ୍ୟ ଗୋ ବୃଷଭ । ଏହାର ଜଗତେ ସମ୍ଭବ ॥
କପିଳା ଆଦି ଶତ ଶତ । ଧେନୁ ସୁରଭି ଚତୁଁ ଜାତ ॥
ଚତୁଁ ଅମୃତ ଶୁଦ୍ଧ ଧାର । ସ୍ରବଣ ଭସାଇଲା ଧର ॥
ଫେଣେ ସାଗର ଊର୍ମି ସମ । ଅମୃତେ ପୃଥ୍ୱୀ ମନୋରମ ॥
ସୁରଭି ବତ୍ସଙ୍କ ଫେଣ ବହି । ଉଡ଼ିଲା ଆସି ଯେବେ ମହୀ ॥
ପଡ଼ିଲା ଆଗେ ହର ଶିରେ । ଥିଲେ ସେ ସେକାଳେ ମହୀରେ ॥
ସେ ହର କୋପ କଲେ ମନେ । ଚାହିଁଲେ ଲଲାଟ ନୟନେ ॥
ସୁରଭି ସୁତସୁତାଚୟ । ମନରେ କଲେ ମହାଭୟ ॥
ରୁଦ୍ରନୟନ ଜ୍ୟୋତି ଯୋଗେ । ଶୋଭିଲେ ଭୟେ ନାନାରଙ୍ଗେ ॥
ରଙ୍ଗିଲେ ଯଥା ରବିକର । ଦିଶେ ଅମ୍ବରେ ଜଳଧର ॥
ଦେଖି ଧେନୁଙ୍କ ଆଦ୍ୟ ରଙ୍ଗ । ମହେଶ ପ୍ରକୋପେ ବିଭଙ୍ଗ ॥
କ୍ରୋଧେ କହନ୍ତି ଦକ୍ଷ ବାଣୀ । କାହିଁ କୋପିଲେ ଶୂଳପାଣି ॥
ଗୋରସ ନୁହଇ ଉଚ୍ଛିଷ୍ଟ । କାହିଁ ଇ କର ମନେ କଷ୍ଟ ॥
ଏ ଯେ ଅମୃତ ଶୁଦ୍ଧ ସ୍ରାବ । ପଡ଼ିଲା ତୁମ୍ଭ ଶିରେ ଭବ ॥
ଏଣେ ହୋଇବ ପ୍ରଜାନ୍ୱିତ । ଏ ନୁହେ କେବେହେଁ ଦୂଷିତ ॥
ସୋମ ଅମୃତ କରି ପାନ । କରେ ତା ଜଗତକୁ ଦାନ ॥
ଉଚ୍ଛିଷ୍ଟ ନୁହେ ସେ ଅମୃତ । ତେଣେ ଜଗତ ଉପକୃତ ॥
ଅନିଳ ସୁବର୍ଣ୍ଣ ଅନଳ । ଯେସନେ ମହୋଦଧି ଜଳ ॥
ନୁହେ ଅଶୁଦ୍ଧ ବ୍ୟବହାରେ । ଗୋରସ ବୁଝ ସେ ପ୍ରକାରେ ॥
ଏ ଯେତେ ସୁରଭି ସନ୍ତତି । ପାଳିବେ ସର୍ବ ବସୁମତୀ ॥
ଦେଇଣ ଘୃତ ଦଧି ପୟ । ସାଧିବେ ପ୍ରଜାଗଣ ଶ୍ରେୟ ॥
ତେଣୁ ଏ ଗୋ-ଜାତି ମଙ୍ଗଳ । ବାଞ୍ଛନ୍ତୁ ଜଗତେ ସକଳ ॥
ଏତେ କହନ୍ତେ ପ୍ରଜାପତି । ଶାନ୍ତ ହୋଇଲେ ପଶୁପତି ॥
ସେ ଦକ୍ଷ ଗୋ-ସଙ୍ଗେ ବୃଷଭେ । ଦେଲେ ସନ୍ତୋଷେ ମହାଦେବେ ॥
ସନ୍ତୁଷ୍ଟ ହୋଇ ପଞ୍ଚାନନ । କଲେ ସେ ବୃଷଭେ ବାହନ

ଆଉରି ତାକୁ କଲେ ଧ୍ୱଜ । ତେଣୁ ବୋଲାନ୍ତି ବୃଷଧ୍ୱଜ ॥
ପାଳିଲେ ସେ ଯେଣୁ ଗୋ-ଜାତ । ହେବେ ଜଗତ୍ର ପଶୁପତି ॥

ସୂତ ଉବାଚ

ପ୍ରଜା ସୃଷ୍ଟିରେ ପୂର୍ବେ ଜାତ । ଗୋ ଜାତି ପ୍ରଜାଁ ଜ୍ୟେଷ୍ଠଭ୍ରାତ ॥
ଗୋରୁ ଚଳାଏ ପ୍ରଜାବୃଦ୍ଧି । ବଢ଼ଇ ଆହାର ସମୃଦ୍ଧି ॥
ଜଟେ ଶଙ୍କର ଶିରେ ଯାଇ । ପଡ଼ିଲା ଆଦ୍ୟ କ୍ଷୀର ଧାରେ ॥
ସେ ଗାଈ ଜଗତ ପାଳନ । ଅତି ପବିତ୍ର ସୁଶୋଭନ ॥
ପ୍ରଜାଗଣର ପ୍ରାଣଦାତ୍ରୀ । ସର୍ବ ଶୁଭଦା ଲୋକମାତା ॥
ତେଣୁ ଗୋ-ଜାତି ସେବା କର । ସୁଖ ଲଭିବେ ନରନାରୀ ॥
ଗୋ-ଜାତି ଜନ୍ମ ବିବରଣ । ପାଣ୍ଡବେ କଲେ ଯା ବର୍ଣ୍ଣନ ॥
ଆଦ୍ୟରେ ଭୀଷ୍ମ ପିତାମହ । ଯେ ଏହା ପଢ଼େ କରି ସ୍ନେହ ॥
ଜନ କଳୁଷୁଁ ଯାଏ ତରି । ଲଭେ ସମ୍ପଦ ସୁତ ଶିରି ॥
ଶ୍ରଦ୍ଧାରେ କରେ ଯେ ଗୋଦାନ । ଲଭେ ସେ ସ୍ୱର୍ଗେ ଉଚ୍ଚସ୍ଥାନ ॥
ଗୋ-ଜାତି ପ୍ରଜା ଉପକାରେ । ସୃଜିଲେ ଦକ୍ଷ ଏ ସଂସାରେ
ଏ ତତ୍ତ୍ୱ ବୁଝି ପ୍ରଜାଗଣ । ସତତ କର ଗୋପାଳନ ॥
ହେବ ଅଶେଷ ସୁଖ ହିତ । ପାମର ଗୋପ ଭଣେ ଗୀତ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ
ଅନୁଶାସନକେ ପର୍ବଣି ଗୋ-ପ୍ରଭାବ କଥନେ
ନାମ ପଞ୍ଚମୋଽଧ୍ୟାୟଃ ।



# ଷଷ୍ଠ ଅଧ୍ୟାୟ

## ଶିଷ୍ୟ ଉବାଚ

ଶୁଣି ଗୋ-ଜନ୍ମ ଇତିହାସ । ମନେ ମୋ ପରମ ଉଲ୍ଲାସ ॥
ସେ ଧର୍ମସୁତ ବିଚକ୍ଷଣ । ପୁଚ୍ଛିଲେ ଆଉ କି ପ୍ରଶନ ॥
ଭୀଷ୍ମ ବା କଲେ କି ଉତ୍ତର । କହ ବିସ୍ତାରି ମୁନିବର ॥

## ଗୁରୁ ଉବାଚ

ପ୍ରଣମି ଭୀଷ୍ମ ପାଦେ ବୀର । ପୁଚ୍ଛିଲେ ରାଜା ଯୁଧିଷ୍ଠିର ॥
ଗୋ-ଜାତି ମାହାତ୍ମ୍ୟ ଶ୍ରବଣେ । ଅତି ଆଗ୍ରହ ମୋର ମନେ ॥
ଗୋ-ଜାତି ଗୌରବ ବଖାଣ । ତୁମେ ତ ସର୍ବ ତତ୍ତ୍ୱ ଜାଣ ।
ଭୀଷ୍ମ ଅନନ୍ତ ସର୍ବଜାଣ । କହିଲେ ନାନା ଉପାଖ୍ୟାନ ॥
ନହୁଷ ରାଜା ଇତିବୃତ୍ତ । ଆଦ୍ୟେ ବର୍ଣ୍ଣିଲେ ଗଙ୍ଗାସୁତ ॥
ଗଙ୍ଗା ଯମୁନା ସଙ୍ଗମସ୍ଥଳେ । ଚ୍ୟବନ ଋଷି ଯୋଗବଳେ ॥
ନିଶ୍ୱାସ ରୋଧି କାଠ ପରି । ଜଳେ ରହିଲେ ତପସ୍ୱାସ୍ୱ ॥
ମାଛ ଧରିବା ଆଶେ ଥରେ । କେଉଟ ପଶି ନଦୀମାରେ ॥
ଚୌଦିଗେ ବିଛାଇଲେ ଜାଲ । ଗୋଳ କଲେ ସେ ନଦୀ ଖାଲ ॥
ଟାଣି ଆଣିଲେ ଜାଲ କଳେ । ମୁନି ଆସିଲେ ମାଛ ତୁଲେ ॥
ଜାଲରେ ବଦ୍ଧ ହୋଇ ତଟେ । ଆଶ୍ଚର୍ଯ୍ୟ ମଣିଲେ କେଉଟେ ॥
ମୁନିଙ୍କି ଦେଖି ଭୟ ପାଇ । ନହୁଷ ରାଜା ପାଶେ ଯାଇ ॥
କେଉଟମାନେ ଜଣାଇଲେ । ରାଜା ଅଇଲେ ନଦୀକୂଳେ ॥
ପ୍ରଣମି ଚ୍ୟବନ ଚରଣ । କି ଆଜ୍ଞା କର ତପୋଧନ ॥
ପୁଚ୍ଛନ୍ତେ ଏସନ ନୃପତି । କହନ୍ତି ସେ ଚ୍ୟବନ ଯତି ॥
କେଉଟ ତୋଷି ମାଛ ମୂଲେ । ମାଛଙ୍କୁ ଗୁଣ୍ଡ ନଦୀ ଜଳେ ॥
ମୁଁ ମଧ୍ୟ କେଉଟଙ୍କ ଧନ । ମୋ ମୂଲ୍ୟ ଦିଅ ହେ ରାଜନ ॥

ତେବେ ମୁଁ ପାଇବି ମୁକତି । କେଉଟ ହାତୁଁ ନରପତି ॥
ଶୁଣି ସନ୍ତୁଷ୍ଟ ସେ ନରେଶ । ସହସ୍ର ସୁବର୍ଣ୍ଣ ଆଦେଶ ॥
କଲେ କେଉଟଙ୍କ ଦେବା ପାଇଁ । ମୁନି କହନ୍ତି ରାଜା ସ୍ୱାମି ॥
ଏ ମୂଲ୍ୟ ମୋ ଉଚିତ ନୁହେ । ଶତ ସହସ୍ର ରାଜା କହେ ॥
ଲକ୍ଷେ ନୁହଇ ମୋର ମୂଲ୍ୟ । କୋଟିଏ କହନ୍ତି ଭୂପାଳ ॥
କୋଟିଏ ନୁହେ ସମ ମୋର । ରାଜାଙ୍କୁ ନ ଭଣେ ଋଷିବର ॥
ରାଜ୍ୟରୁ ମୋର ଅର୍ଦ୍ଧ ଅଂଶ । ନିଅନ୍ତୁ କୈବର୍ତ୍ତ ତାପସ ॥
ନୁହେଁ ଏ ମୋ ମୂଲ୍ୟ ସମାନ । ଶୁଣିଣ ରାଜା ହତଜ୍ଞାନ ॥
ଏକାଳେ ଋଷି ଗବଜାତ । ହେଲେ ସେଠାରେ ଉପଗତ ॥
ନହୁଷେ କହିଲେ ବୁଝାଇ । ଚ୍ୟବନ ମୂଲ୍ୟ ଦିଅ ଗାଈ ॥
ବର୍ଣ୍ଣେ ବ୍ରାହ୍ମଣ ସର୍ବୋତ୍ତମ । ତାଙ୍କର ମୂଲ୍ୟ ନୁହେଁ ଧନ ॥
ଧେନୁ ଉତ୍ତମ ପ୍ରାଣିକୁଳେ । ସେ ଏକା ସମ ବିପ୍ର କୁଳେ ॥
ତେଣୁ ଚ୍ୟବନ ମୂଲେ ଗାଈ । ଦିଅ ଭୂପତି ନର ସାଇଁ ॥
ହୋଇ ସନ୍ତୁଷ୍ଟ ସେ ନୃପତି । ପଚାରେ ମୁନି ଅନୁମତି ॥
ଉଠ ଚ୍ୟବନ ବିପ୍ର ଋଷି । କୈବର୍ତ୍ତେ କହେ ମୁଁ ଖୁସି ॥
ତୁମ୍ଭର ମୂଲ୍ୟେ ଦେବି ଧେନୁ । ସନ୍ତାପ ଛାଡ଼ ମୁନି ମନୁ ॥
ଚ୍ୟବନ ହେଲେ ହରଷିତ । ରାଜାଙ୍କୁ କହନ୍ତି ଏମନ୍ତ ॥

## ଚ୍ୟବନ ଉବାଚ

ଗୋଧନେ କିଣା ହେଲି ମୁହିଁ । ଗୋଧନ ସମ ଧନ ନାହିଁ ॥
ଗୋ-ଗୁଣ ଶ୍ରବଣ କୀର୍ତ୍ତନ । ଧେନୁ ଦର୍ଶନ ଧେନୁ ଦାନ ॥
ଅଟଇ ସର୍ବ ଶୁଭପ୍ରଦ । ଖଣ୍ଡାଇ ଦୁରିତ ବିପଦ ॥
ଲକ୍ଷ୍ମୀ ମିଳଇ ଗୋ-ସେବନେ । ନ ପଡ଼େ ପାପ କଥା ମନେ ॥
ଗୋ-ଜାତି ହେଲେ ସୁପ୍ରସନ୍ନ । ଲୋକଙ୍କୁ ମିଳେ ସୁଖେ ଅନ୍ନ ॥
ଗୋ-ଜାତି ଯଜ୍ଞରେ ପ୍ରଧାନ । କରନ୍ତି ଯେଣୁ ହବି ଦାନ ॥

ସ୍ୱାହା ସ୍ୱଧାଦ ବଷଟ୍‌କାର । ଯଜ୍ଞର ଯେତେ ଉପସ୍କର ॥
ଗୋ-ଜାତି ଚତୁଁ ହୁଏ ଲଭ । ଅଶେଷ ଗୋ-ଜାତି ପ୍ରଭାବ ॥
ଗୋରୁ ବହନ୍ତି ଦ୍ରବ୍ୟ ରସ । ଦେବେ ହୁଅନ୍ତି ଯହିଁ ବଶ ॥
ଗୋ ତନୁ ଘଟରେ କ୍ଷୀରଧାର । ବିଶୁଦ୍ଧ ଅମୃତ ଆହାର ॥
ଗୋ-ଜାତି ସର୍ବ ଲୋକମାତା । ଦେବତା ମାନବେ ବନ୍ଦିତା ॥
ଗୋ-ଜାତି ନିଜ ତନୁ ତେଜେ । ଅନଳ ସମାନ ବିରାଜେ ॥
ଯହିଁ ଗୋ-କୁଳ କରେ ବାସ । ନିର୍ଭୟେ ମାରଇ ନିଶ୍ୱାସ ॥
ଅତି ପବିତ୍ର ସେହି ସ୍ଥାନ । ହରଇ ଜନ ପାପମାନ ॥
ଆଦରେ ପୂଜିଲେ ଗୋ-ଜାତି । ପାଏ ମାନବ ସ୍ୱର୍ଗଗତି ॥
ପୂରଇ ସକଳ କାମନା । କଲେ ଗୋ-ପାଳନ ଅର୍ଚ୍ଚନା ॥
ସ୍ୱର୍ଗକୁ ପାହାଚ ପରାଏ । ଗୋ-ଜାତି ଜାଣ ନର ସଏ ॥
ସ୍ୱର୍ଗେ ପୂଜନ୍ତି ଦେବଗଣ । ସାଦରେ ଗୋ-ଜାତି ଚରଣ ॥
ଧେନୁ ସାକ୍ଷାତେ ଦେବୀ ରୂପ । ଏ ତଥ୍ୟ ଭଲେ ବୁଝ ନୃପ ॥
ଗୋ-ଜାତି ମାହାତ୍ମ୍ୟ ଅଶେଷ । ମୁଁ କିବା କହିବି ନରେଶ ॥
ମୁନି ବଚନ ଶେଷେ ସର୍ବେ । ବନ୍ଦିଲେ ଚରଣେ ମାରବେ ॥
କେଉଟମାନେ କରଯୋଡ଼ି । କହନ୍ତି ମୁନି ପାଦେ ପଡ଼ି ॥
ହେ ବିପ୍ର କ୍ଷମା କର ଦୋଷ । ଆମ୍ଭେ ସକଳେ ତୁମ୍ଭ ଦାସ ॥
ଗୋ ଧନେ ନାହିଁ ପ୍ରୟୋଜନ । ଏ ଗୋରୁ ନିଅନ୍ତୁ ଆପଣ ॥
କୈବର୍ତ୍ତଗଣ କଥା ଶୁଣି । ଅତି ସନ୍ତୁଷ୍ଟ ହେଲେ ମୁନି ॥
ପାଇ ସେ ମୁନି ଶୁଭାଶିଷ । କୈବର୍ତ୍ତେ ଗଲେ ସ୍ୱର୍ଗଦେଶ ॥
ଜାଲରେ ଯେତେ ମାଛ ଥିଲେ । ସେ ସର୍ବେ ମଧ୍ୟ ସ୍ୱର୍ଗେ ଗଲେ ॥
ନହୁଷ ମୁନି ଆଶୀର୍ବାଦେ । ସାମ୍ରାଜ୍ୟ କଲେ ଅପ୍ରମାଦେ ॥

## ଗୁରୁ ଉବାଚ

ଗୋ-ଜାତି ମାହାତ୍ମ୍ୟ କୀର୍ତ୍ତନ । କଲେ ଯା ମହର୍ଷି ଚ୍ୟବନ ॥

ସଂସାରେ ବୁଝିଥା ଏ ତତ୍ତ୍ୱ । ଗୋ ଜାତି ଗୌରବ ମହତ୍ତ୍ୱ ॥
କୋଟି ସୁବର୍ଣ୍ଣ ରାଜ୍ୟ ଧନ । ନୁହଇ କେଭେ ଗୋ ସମାନ ॥
ଗୋରୁ ଦେବତା ବୋଲି ଜାଣି । ପୂଜନ୍ତୁ ଗୃହେ ଗୃହେ ପ୍ରାଣୀ ॥
ଏଣେ ମିଳଇ ସୁଖ ଯଶ । କହଇ ଦୀନ ଗୋପି ଦାସ ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନେ ପର୍ବଣି
ଚ୍ୟବନ ଗୋ ମାହାତ୍ମ୍ୟ କଥନ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ

ଆବର ଗୋଦାନ ପ୍ରସଙ୍ଗ । କହନ୍ତି ଭୀଷ୍ମ ମହାଭାଗ ॥
ଗୋଦାନ ସର୍ବଦାନେ ସାର । ଏଣେ ସନ୍ତୁଷ୍ଟ ଦେବନର ॥
ତପସ୍ୱୀଗଣେ ଧେନୁଶ୍ରେୟ । ସେ ଯେଣୁ ଦିଏ ଘୃତ ପୟ ॥
ଶ୍ରୀ ମହାଦେବ ଉମାପତି । ଗୋ ଗୋଷ୍ଠେ କରନ୍ତି ବସତି ॥
କରନ୍ତି ତପ ଆଚରଣ । ଗୋଗଣ ମଧ୍ୟେ ପଞ୍ଚାନନ ॥
ଗୋଗଣ ସଦା ବ୍ରହ୍ମଲୋକେ । ବିହାର କରନ୍ତି କୌତୁକେ ॥
ସିଦ୍ଧ ବ୍ରହ୍ମର୍ଷିଗଣ ନିତି । ଗୋପଦେ କରନ୍ତି ପ୍ରଣତି ॥
ମାଗନ୍ତି ଘୃତ ଦୁଗ୍ଧ ଦଧି । ଲଭନ୍ତି ଯେଣେ ସର୍ବସିଦ୍ଧି ॥
ଚୋଚର୍ମ ଅସ୍ଥି ଶୃଙ୍ଗ ବାଳ । ହୁଅଇ ଲୋକ ଉପକାର ॥
ସହି ବରଷା ଖରା ଶୀତ । ଗୋରୁ ସାଧନ୍ତି ଲୋକ ହିତ ॥
କର୍ମ କରନ୍ତି ଦିନରାତି । ଜଗତ ହିତେ ଗୋରୁଜାତି ॥
କାହିଁ ବା କେବେହେଁ ଗୋଗଣ । ନ କହେ ଆପଣା କଷଣ ॥
ଭୋଗନ୍ତି ଯେତେ ଦୁଃଖରାଶି । ସହନ୍ତି ଯେସନେ ଉଦାସୀ ॥
ତେଣୁ ଗୋ ବ୍ରହ୍ମଜ୍ଞାନୀ ପ୍ରାଏ । ଅନ୍ତେ ପରମ ପଦ ପାଏ ॥
ଗୋରୁ ବ୍ରାହ୍ମଣ ଏକ ସମ । କହନ୍ତି ବିବେକୀ ଉତ୍ତମ ॥
ଯେଉଁମାନେ ଦେବଙ୍କ କାରଣ । ଗାଏ ଅଦ୍ୟାପି ବସୁମତୀ ॥
ପୂର୍ବେ ସେ କଲେ ମହାଯାଗ । ଦେବେ ଅର୍ପିଲେ ହବିର୍ଭାଗ ।

ସେ ଉତ୍ପନ୍ନେ ହେବ ନରହେତି । ପଶୁରୂପେ ବର୍ତ୍ତିଲେ ଗୋ ଜାତି ॥
ସେ ପଶୁଯଜ୍ଞ ଚର୍ମଚୟେ । ଚରମଣ୍ୱତୀ ନଦୀ ବହେ ॥
ସେ ମହାପାତକେ ଗଲା ନାଶ । ଗୋରୁଜାତିର ପଶୁଦୋଷ ॥
ପଶୁଦୋଷରୁ ମୋକ୍ଷମୁକ୍ତ । ଗୋ ଜାତି ଦାନ ଉପଯୁକ୍ତ ॥
ଉତ୍ତମ ସୁଜ୍ଞାନୀ ବ୍ରାହ୍ମଣେ । ତୋଷଇ ଯେହୁ ଧେନୁଦାନେ ॥
ତାହାର ନସେ ସକଳ ଦୁର୍ଗତି । ନ ଭୋଗେ କେବେହେଁ ବିପତ୍ତି ॥
ସହସ୍ରେ ଗୋଦାନ ଯେ କରେ । ମରଣେ ନରକୁ ନିସ୍ତରେ ॥
ଏ ଜନ୍ମେ ସଦା ପାଏ ଜୟ । ଜାଣ ହେ ତାତ ନିଃସଂଶୟ ॥
ଅମୃତ ସାକ୍ଷାତେ ଗୋ କ୍ଷୀର । କହନ୍ତି ଦେବ ସୁନାଶିର ॥
ତେଣୁ ଯେ କରେ ଧେନୁଦାନ । ସେ କରେ ଅମୃତ ପ୍ରଦାନ ॥
ହୋମରେ ଆହୁତି ଯେ ଘୃତ । ଦେବଙ୍କୁ ହୁଏ ସେ ଅମୃତ ॥
ଘୃତରୁ ଯଜ୍ଞ ଧୂମଜାତ । ଦେବତା ତହିଁରେ ତୃପତ ॥
ଗୋଦାନ ହୋମ ଦ୍ରବ୍ୟଦାନ । ତେଣୁ ଏ ଉଭୟ ସମାନ ॥
ବୃଷଭ ଧେନୁ ଗଣପତି । ସାକ୍ଷାତେ ସ୍ୱରଗ ମୂରତି ॥
ତେଣୁ ଯେ ଉତ୍ତମ ବ୍ରାହ୍ମଣେ । ତୋଷଇ ବୃଷଭ ପ୍ରଦାନେ ॥
ସେ ସର୍ବଲୋକେ ପୂଜାପାଏ । ଇହ ସଂସାରେ ପ୍ରାଣ କ୍ଷୟେ ॥
ଗୋ ଜାତି ସର୍ବ ପ୍ରାଣୀ ପ୍ରାଣ । ଜାଣ ହେ କୁରୁ-ଭୂଷଣ ॥
ତେଣୁ ଯେ କରେ ଧେନୁଦାନ । ସେ କରେ ଜୀବନ ପ୍ରଦାନ ॥
ଗୋ ସର୍ବ ଭୂତର ଶରଣ । ତେଣୁ ଯେ କରଇ ଗୋଦାନ ॥
ହୁଏ ଶରଣ ସର୍ବଭୂତେ । ପାଏ ସେ ଦିବ୍ୟ ଗତି ଅନ୍ତେ ॥
ବଧ ନିମନ୍ତେ ଗୋରୁଦାନ । କଦାପି ନ କରିବ ଜନ ॥
ନୃଶଂସ ନିର୍ଦ୍ଦୟ ଘାତୁକେ । କି ଅବା ପାଷାଣ୍ଡ ନାସ୍ତିକେ ॥
କେବେ ହେଁ ଗୋରୁ ଦେବ ନାହିଁ । ଦେଲେ ନରକେ ଗତି ପାଇ ॥
ଅଥବା ଗୋ ଜୀବିକା ଯାର । ଗୋରୁ ନ ଦେବ ତାକୁ ନର ॥
ନ ମାନି ମହର୍ଷି ବଚନ । ଏ ଲୋକମାନଙ୍କୁ ଯେ ଜନ ॥
ଦିଏ ବା ବିକେ ଧନ ଲୋଭେ । ପଡ଼େ ସେ ଅକ୍ଷୟ ରୌରବେ ॥

ବାଞ୍ଝ ମରନ୍ତ ରୋଗା ଗାଈ । ଦାନରେ ଦେବା ନ ଯୋଗାଇ ॥
ଯେ ଗାଈ ଥକାନ୍ତି ବା କ୍ଷୀଣ । କି ଅବା ଯେହୁ ଅଙ୍ଗହୀନ ॥
ସେ ଗାଈ ନ କରିବ ଦାନ । ସେପରି ଦାନ ଅକାରଣ ॥
ଦଶ ସହସ୍ର ଧେନୁଦାନ । ଯଥାବିଧିରେ କଲେ ଜନ ॥
ଇନ୍ଦ୍ର ସଙ୍ଗତେ ସେ ସ୍ୱର୍ଗରେ । ପ୍ରାଣାନ୍ତେ ପ୍ରମୋଦେ ରହଇରେ ॥
ଯେ କରେ ଲକ୍ଷେ ଧେନୁଦାନ । ଲଭେ ଅକ୍ଷୟ ସ୍ୱର୍ଗ ସ୍ଥାନ ॥
ଗୋଦାନେ ମିଳେ ଯେ ସୁକୃତ । ଦେବେ ତର୍ଣ୍ଣିରେ କୃତ୍ୟାକୃତ୍ୟ ॥
ଗୋଦାନ ମାହାତ୍ମ୍ୟ ଏପରି । ସେ ଧର୍ମସୁତ ଦଣ୍ଡଧାରୀ ॥
ଶୁଣି ହୋଇଲେ ତୁଷ୍ଟ ଅତି । ହଅ ହେ ଜନେ ଏଣେ ମତି ॥
ବୁଝି ଗୋ-ଜାତି ଉପକାର । ପାଳିବ ତାଙ୍କୁ ନିରନ୍ତର ॥
ସୁଫଳ ଦେଖି ଶୁଦ୍ଧଚିତ୍ତେ । ହଅ ଆପଣ କ୍ଷେ-ତେ ॥
ଲଭିବ ଅଶେଷ କଲ୍ୟାଣ । କହଇ ଗୋପ ଅକିଞ୍ଚନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି ଭୀଷ୍ମ ଗୋଦାନ ଫଳ କଥନେ ନାମ ସପ୍ତମୋଽଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ

### ଯୁଧିଷ୍ଠିର ଉବାଚ

ହେ ଭୀଷ୍ମ କୁରୁ ପିତାମହ । ଦୟା ବହିଣ ମତେ କହ ॥
କ୍ଷତ୍ରିୟ ଦିଏ ଭୂମିଦାନ । ବ୍ରାହ୍ମଣ କରେ ତା ଗ୍ରହଣ ॥
ଏପରି ଅଛି କେଉଁ ଦାନ । ଦେଇପାରେ ଯା ସର୍ବ ବର୍ଣ୍ଣ ॥
ବେଦେ ଯେ ଦାନର ପ୍ରଶଂସା । ସହସ୍ରେ କହ ମହାଯଶା ॥

## ଭୀଷ୍ମ ଉବାଚ

ଗୋ ବିଦ୍ୟା ଭୂମି ତିନ ଦାନ । ଫଳରେ ଅଟନ୍ତି ସମାନ ॥
ଦେଲେ ଏ ଦାନ ଯଥାବିଧି । ହୁଏ ସକଳ ଫଳସିଦ୍ଧି ॥
ଏ ତିନ ମଧ୍ୟରେ ଗୋ ଦାନ । ପ୍ରଶଂସେ ଜନସାଧାରଣ ॥
ଗୋ ଦାନେ ସତ୍ୟ ଫଳ ଲଭ । ସେ ପୁଣି ଅଧିକ ସୁଲଭ ॥
ଗୋରୁ ସକଳ ଭୂତମାତା । ସକଳ ଜନସୁଖଦାତା ॥
ଯେ ନର ବାଞ୍ଛେ ସ୍ୱବୃଦ୍ଧି । ସେ ନିତ୍ୟ ହୋଇ ସ୍ଥିରବୁଦ୍ଧି ॥
କରିବ ଧେନୁ ପ୍ରଦକ୍ଷିଣ । ହେବ ତା କାମନା ପୂରଣ ॥
ଜୁଡ଼ିରେ ପକାଇ ଚରଣ । ଗୋଗୋଷ୍ଠେ ନ ଗୃଳିବ ଜନ ॥
ଗୋସ୍ଥାନ ଦେବସ୍ଥଳୀ ସମ । ଗୋ ଜାତି ଦେବତା ପ୍ରଥମ ॥
ଯଜ୍ଞାର୍ଥେ ଗୋରୁ ପ୍ରୟୋଜନ । କରନ୍ତି ଭୂମି କରଷଣ ॥
ଭୂମି କର୍ଷଣେ ଅନ୍ନଲଭ । ତେଣେ ବଞ୍ଚନ୍ତି ସର୍ବ ଜୀବ ॥
ଯଜ୍ଞରେ ସନ୍ତୁଷ୍ଟ ଦେବତା । ଏଣୁ ଗୋ ସର୍ବ ଶୁଭଦାତା ॥
ରଖିବ ଗୋରୁଙ୍କୁ ଯତନେ । ନିର୍ମଳ ସୁକୋମଳ ସ୍ଥାନେ ॥
ଦଉଡ଼ାଇବ ନାହିଁ କେବେ । ଯଷ୍ଟିରେ ଧଇଁସଇଁ ହେବେ ॥
ଗୋରୁଙ୍କୁ ନ ରଖିବ ଶୋଷେ । କିବା କଠିନ ରୁଦ୍ଧ ଦେଶେ ॥
ତୃଷା ଆତୁର ହୋଇ ଗାଈ । ଯାହା ଆଡ଼କୁ ଢଏ ଚାହିଁ ॥
ସେ ଯେବେ ନ ହରେ ତା ଶୋଷ । ସବଂଶେ ଯାଏ ନଷ୍ଟେ ନାଶ ॥
ବାସଭବନ ଶ୍ରାଦ୍ଧସ୍ଥାନ । ଆଦର ଦେବ ଆୟତନ ॥
ହୁଅଇ ଶୁଦ୍ଧ ଯାର ମଳେ । ତା ତହୁଁ କେ ଶୁଦ୍ଧ ଭୂତଳେ ॥
ନ କର କଷ୍ଟ ହିଁ ଦିବସ । ଗୋରୁଙ୍କୁ ଦିଅଇ ଯେ ଘାସ ॥
ପ୍ରତ୍ୟହ ପାଳଇ ନିୟତ । ବରଷେ ଯାଏ ଏହି ବ୍ରତ ॥
ଲଭଇ ପୁତ୍ର ଧନ ଯଶ । ସର୍ବ ଅଶୁଭ ଯାଏ ନାଶ ॥
ଦୁଃସ୍ୱପ୍ନ କେବେ ସେ ନ ଦେଖେ । ସବଂଶେ ସଦା ରହେ ସୁଖେ ॥

## ଯୁଧିଷ୍ଠିର ଉବାଚ

କି ଭଳି କରେ ଧେନୁଦାନ । କହିବା ଶାସ୍ତ୍ରର ପ୍ରମାଣ ॥

## ଭୀଷ୍ମ ଉବାଚ

ଅସାଧୁ ସ୍ୱଭାବ ଯେ ନର । ଯେ କରେ ପାପିଷ୍ଠ ଆଚାର ॥
ସେ ଲୋଭୀ କବୀ ମିଛ କହେ । ଗୋ-ଧନ ନେବା ସେ ଯୋଗ୍ୟ ନୁହେ ॥
ଶୁଦ୍ଧ ଯାହାର ଆଚରଣ । ଯେ ସାଧେ ଅପର କଲ୍ୟାଣ ॥
ସକଳ ଭୂତେ ଭାଞ୍ଜେ ହିତ । ଦାନର ପାତ୍ର ସେ ବିହିତ ॥
ତାଙ୍କର ଧର୍ମ କର୍ମବଳ । ସାଧଇ ଦାତାର ମଙ୍ଗଳ ॥
ପାତ୍ର ନ ଦେଖି ଦେଲେ ଦାନ । ଯାଏ ସେ ମାତ୍ର ଅକାରଣ ॥
ଅପାତ୍ରେ ଯେ ଦାନ ପ୍ରଦତ୍ତ । ଫଳେ ସେ ଫଳ ବିପରୀତ ॥

## ସୂତ ଉବାଚ

ସେ ଭୀଷ୍ମ କ୍ଷମା ମହାବୁଦ୍ଧି । ଧେନୁ ପ୍ରଦାନ ନାନାବିଧି ॥
ଗୋ-ଜାତି ମାହାତ୍ମ୍ୟ ବିଶେଷ । ବୁଝାଇ ଦେଲେ ଉପଦେଶ ॥
ସେ ଉପଦେଶ ମାନି ଜନେ । ଲାଗନ୍ତୁ ସଦା ଗୋ-ପାଳନେ ॥
କରନ୍ତୁ ଗୋ-ପାଳନ ଶିକ୍ଷା । ଧାନ ଗୋପର ଏକ୍ଷ ଉକ୍ଷା ॥
ଏଣେ ମିଳିବ ସର୍ବସିଦ୍ଧି । ହୋଇବ ଧନଜନ ବୃଦ୍ଧି ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି ଗୋଦାନପାତ୍ର ଗୁଣବର୍ଣ୍ଣନେ ନାମ ଅଷ୍ଟମୋଽଧ୍ୟାୟଃ ।



# ନବମ ଅଧ୍ୟାୟ

## ଭୀଷ୍ମ ଉବାଚ

ଯେ କରେ ଗୋଧନ ହରଣ । ତାହାର ଗତି ଏବେ ଶୁଣ ॥
ଗୋ-ଧନ ଅପହାରୀ ନର । ନରକେ ପଡ଼େ ଯୁଧିଷ୍ଠିର ॥
ଥିଲେ ବା ଦେବର ସୁକୃତ । ପଛେ ନରକୁ ହୁଏ ମୁକ୍ତ ॥
ଶୁଣ କହୁଛି ଇତିବୃତ୍ତ । ନୃପତି ନୃଗଙ୍କ ଚରିତ ॥
ହେଲେ ସେ ରାଜା ବଡ ଦାନୀ । ବେଦପରାୟଣ ମହାଜ୍ଞାନୀ ॥
ତାଙ୍କର ଘଟିଲ ଯେ ଗତି । ଜାଣନ୍ତି କୃଷ୍ଣ ଯଦୁପତି ॥
ଦ୍ୱାରକାପୁର ନରନାରୀ । ଅଜଣା ନୁହଇ କାହାର ॥
ଅତି ପ୍ରାଚୀନ ଏକ କୂପ । ଦ୍ୱାରକାପୁରେ ଥିଲ ନୃପ ॥
ଆବଦ୍ଧ ଥିଲ ବହୁ ଦିନୁ । ଲୋକଙ୍କ ବ୍ୟବହାର ବିନୁ ॥
ବହୁତ ଘାସ ଗଛ ଲତ । ଥିଲା ସେ କୂପକୁ ଘୋଡ଼ାଇ ॥
ସେଠାର ଲୋକଙ୍କ ବିଗ୍ରତ । କୂଅକୁ କରିବେ ସଂସ୍କାର ॥
କାଟିଲେ ଗଛ ଲତା ଘାସ । କୂପେ ଦେଖିଲେ କୃକଳାସ ॥
କୃକଳାସକୁ କୂପୁଁ କାଢ଼ି । ଆଣିବା ଲାଗି ଠେଙ୍ଗାବାଡ଼ି ॥
ହେଲା ବହୁତ ଆୟୋଜନ । ନଗଁ ଆସିଲେ ବହୁତ ଜନ ॥
କଲେ ସେ ସକଳେ ପ୍ରୟାସ । କୂପୁଁ ନ ଆସେ କୃକଳାସ ॥
ଆବର ମିଶିଲେ ବହୁତ । ଟାଣନ୍ତି ଯେତେ ଶକ୍ତିମତ ॥
ଲଗିଲ ବହୁତ ଦଉଡ଼ି । ତଥାପି ନ ପାରିଲେ କାଢ଼ି ॥
ପରେ ସେ ନଗର ଜନତା । କୃଷ୍ଣଙ୍କୁ ଦେଲେ ଏ ବାରତା ॥
ଶ୍ରୀକୃଷ୍ଣ ଆସି କୃକଳାସେ । ହାତ ଲଗାନ୍ତେ ଅନାୟାସେ ॥
କୂଅରୁ ହେଲା ସେ ବାହାର । ଅତି ସୁନ୍ଦର କଳେବର ॥
ଲଗାଇ କୃଷ୍ଣପଦେ ମଥା । କହିଲ ତାର ପୂର୍ବକଥା ॥
ଥିଲି ମୁଁ ପୂର୍ବେ ନୃପରାଜା । ଲୋକେ ପାଇଲି ବହୁ ପୂଜା ॥

କଲ ବହୁତ ଦାନପୁଣ୍ୟ । ସର୍ବେ ବୋଇଲେ ଧନ୍ୟ ଧନ୍ୟ ॥
ଏକଦା ଏକ ବିପ୍ର ଗାଈ । ପଶିଲା ଗୋଟୋଟିଷ୍ଟୁ ପଳାଇ ॥
ମରଣ ପୂର୍ବେ ଏକ ଦିନ । କଲି ସହସ୍ରେ ଧେନୁ ଦାନ ॥
ଚିହ୍ନି ନ ପାରି ଭ୍ରମବଶେ । ଗୋପାଳ ଗଣିଲା ସହସ୍ରେ ॥
ମିଶାଇ ସେ ବିପ୍ର ଗାଈକି । ମୁଁ ତାହା ଦାନେ ଦେଲି ଟେକି ॥
ଯେ ବିପ୍ର ଗଲା ଦାନ ନେଇ । ତା ଘରେ ଦେଖି ନିଜ ଗାଈ ॥
ପଚ୍ଛରେ ଗାଈ ଅଧିକାରୀ । ପାଇଲ ଏ ଗାଈ କପରି ॥
ଏ ମୋର ଗାଈ ଦିଅ ମୋତେ । କହ ନା ପାଇଲ କେମନ୍ତେ ।
ଯେ ବିପ୍ର ନେଇଥିଲା ଦାନ । ଦେଲା ସେ ଆପଣା ପ୍ରମାଣ ।
ସେ ବେଣ ବିପ୍ର ମୋର ପାଶେ । ପ୍ରବେଶ ହେଲେ ଅତି ରୋଷେ ॥
ପ୍ରତିଗ୍ରାହକ ବିପ୍ରେ ମୁହିଁ । କହିଲି ଅନେକ ବୁଝାଇ ॥
ଆଉ ସହସ୍ରେ ଗାଈ ନିଅ । ଏ ବିପ୍ର ଗାଈକି ଫେରାଅ ॥
କଲା ନାହିଁ ସେ ସ୍ୱୀକାର । ବୋଲେ ତୋ ଦାନ ଭୁଞ୍ଜ ଘର ॥
ସେ ଧେନୁ ଅଧିକାରୀ ଦ୍ୱିଜେ । କହିଲି ପୁଣି ଭୟ ଲାଜେ ॥
ମୋ ଗୋଷ୍ଠପାଳର ଏ ଭ୍ରମ । ହେ ବିପ୍ର ମୋର ଦୋଷ କ୍ଷମ ॥
ସହସ୍ରେ ଅବା ଲକ୍ଷେ ଗାଈ । ଦେବି ଏ ଗୋଟିକର ପାଇଁ ॥
ନ ଘେନ ମୋର ଅପରାଧ । କ୍ଷମା କର ଏ ପରମାଦ ॥
ମଙ୍ଗିଲେ ନାହିଁ ସେ ବ୍ରାହ୍ମଣ । କହିଲେ ନ ନେବି ମୁଁ ଆନ ॥
ମୋର ଲକ୍ଷେ କି ପ୍ରୟୋଜନ । ମୋ ଗାଈ ଦିଅ ହେ ରାଜନ ॥
ପଡ଼ି ମୁଁ ଉଭୟ ସଂକଟେ । ମରଣ ଭେଟିଲି ନିକଟେ ॥
ଗଲି ମୁଁ ଯେବେ ଯମପୁର । ପାଇଲି ବହୁତ ଆଦର ॥
ଯମ କହିଲେ ନୃପରାଜ । ସାଧିଛ ବହୁ ପୁଣ୍ୟ କାର୍ଯ୍ୟ ॥
ଗୋଷ୍ଠପାଳର ଭ୍ରମବଶେ । ପଡ଼ିଛ ଏକମାତ୍ର ଦୋଷେ ॥
ହୋଇଛ ଧେନୁ ଅପହାରୀ । ପ୍ରଦାନ କଲ ନ ବିଚାରି ॥
ଏ ପାପ ଫଳରେ ଯେ ଗତି । କେବେ ଭୋଗିବ ନରପତି ॥
ପାପର ଫଳ ଗଲେ କ୍ଷୟ । ଲଭିବ ସମ୍ଭୋଗ ଅକ୍ଷୟ ॥

ଆଜ ବା ଘଟେ ପାପ ଭୋଗ । ଚତୁର୍ଭୁଜ କହ ରାଜା ନୃଗ ॥
ପାପର ଫଳ ଦେଖ ଅଗ୍ରେ । ଶୁଣି ମୋ ବହୁଁ ଯମ ବ୍ୟଗ୍ରେ ॥
କହିଲେ ହୁଅ କୃକଳାସ । ଦ୍ଵାରକା କୂପେ କର ବାସ ॥
ଦଶ ସହସ୍ର ବର୍ଷ କାଳ । ଏହା ତୁମ୍ଭର ପାପଫଳ ॥
ଶ୍ରୀକୃଷ୍ଣ ବସୁଦେବ ସୁତ । ସ୍ପର୍ଶିଲେ ତୁମ୍ଭେ ହେବ ପୂତ ॥
ପୁଣି ଆସିବ ସ୍ଵର୍ଗପୁର । ଲଭିବ ସଂଭୋଗ ଅପାର ॥
ତବ ପରଶେ ଯଦୁପତି । ପାଇଲି ମୁଁ ଆଜ ମୁକତି ॥
ନମିଲେ ନୃଗ କୃଷ୍ଣପଦେ । ସ୍ଵର୍ଗେ ଚଳିଲେ ମହାନନ୍ଦେ ॥

## ସୂତ ଉବାଚ

ଶୁଣି ଏ ପୁଣ୍ୟ ପ୍ରିୟବୃତ୍ତ । ପାଣ୍ଡୁ ନନ୍ଦନ କୃତକୃତ୍ୟ ॥
ନ ଜାଣି ଗୋରୁହରଣ ଦୋଷେ । ଭୋଗିଲେ ବରଷ ସହସ୍ରେ ॥
ସେ ନୃଗ ଧାର୍ମିକ ରାଜନ । ହୁଅ ହେ ଜନେ ସାବଧାନ ॥
ନ ରଖ କେବେ ଅନ୍ୟ ଗାଈ । ଜାଣି ବା ନ ଆଣ ଭୋରାଇ ॥
ଗୋ ଅପହରଣେ ଯେ ଦୋଷ । ନୁହଇ ଶତକାଳେ ଶେଷ ॥
ଇହ ସଂସାରେ କାରାବାସ । ଲୋକେ ହୁଅଇ ଅପଯଶ ॥
ମରଣେ ଦଣ୍ଡ ଯମଦ୍ଵାରେ । ନରକ ଯନ୍ତ୍ରଣା ନ ସରେ ॥
ହେ ଶିଷ୍ୟ ତୁମ୍ଭେ ଏଥୁଁ ଯାଇ । ଲୋକଙ୍କୁ କହିବ ବୁଝାଇ ॥
ନ କର କେହି ଗୋରୁ ଚୋର । କିବା ଗୋପନେ ଅପହର ॥
ଗୋରୁଙ୍କୁ ଖଣ୍ଡସ୍ଥ ନ କର । ଏ ପାପ ଅତି ଭୟଙ୍କର ॥
ଲୋଭରେ କରି ଯେ କରିବ । ଅକାଳେ ଧନେ ସେ ମରିବ ॥
ହୁଅ ହେ ଜନେ ସାବଧାନ । ନ ହର କାହାର ଗୋଧନ ॥
ଲୋମଶ କହଇ ବାରବାର । ଏ କଥା ସର୍ବେ ହେତୁ କର ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି ଗୋ ହରଣ ପାପ କଥନେ ନାମ ନବମୋଽଧ୍ୟାୟଃ ।



# ଦଶମ ଅଧ୍ୟାୟ

## ଶିଷ୍ୟ ଉବାଚ

ହେ ମୁନି କର ଅନୁଗ୍ରହ । ଆଉରି ଗୋ ମାହାତ୍ମ୍ୟ କହ ॥
ଶାସ୍ତ୍ର କହିଲେ ଧର୍ମସୂତ୍ରେ । ଗୋ ଦାନେ ପୁଣ୍ୟ ହୁଏ ଯେତେ ॥
ଗୋ ଜାତି ମାହାତ୍ମ୍ୟ ଅପାର । ଗୋ ଅପହାରେ ପାପ ଘୋର ॥
ମାତ୍ର କହ ହେ ଗୁରୁଦେବ । କରିଛି କିଏ ଅନୁଭବ ॥
କେ ଅବା ଦେଖିଛି ନୟନେ । ମିଳେ ଯେ ସ୍ୱର୍ଗ ଧେନୁ ଦାନେ ॥
ପ୍ରତ୍ୟକ୍ଷ ପ୍ରମାଣ ପ୍ରକାଶ । ଜନ୍ମିବ ସର୍ବଙ୍କେ ବିଶ୍ୱାସ ॥

## ଗୁରୁ ଉବାଚ

ତୁମ୍ଭ ଏ ପ୍ରଶ୍ନର ଉତ୍ତର । ଦେଇଅଛନ୍ତି ଶାସ୍ତ୍ରକାର ॥
ବୈଦିକ ଯୁଗର କାହାଣୀ । ଯାହା କହିଲେ ଶାସ୍ତ୍ରଜ୍ଞାନୀ ॥
ଶୁଣ ଏବେ ସେ ଇତିହାସ । ତୁଟିବ ମନୁ ଅବିଶ୍ୱାସ ॥
ଥିଲେ ପୂର୍ବେ ଉଦ୍ଦାଳକ । ଋଷି ସୁଜ୍ଞାନୀ ସୁବିବେକ ॥
ପୁତ୍ର ତାଙ୍କର ବିଶ୍ୱଜିତ । ସକଳ ଲୋକରେ ବିଦିତ ॥
କଲେ ସେ ଯଜ୍ଞ ଅନୁଷ୍ଠାନ । ଦେଲେ ବହୁତ ଧେନୁଦାନ ॥
ତାଙ୍କର ପୁତ୍ର ନଚିକେତ । ଗୋ ଦାନ କାଳେ ଉପଗତ ॥
ପିତାଙ୍କୁ ପଚାରେ ନନ୍ଦନ । ମତେ କାହାକୁ ଦେବ ଦାନ ॥
କର୍ମରେ ଥିବାରୁ ନିଯୁକ୍ତ । ବିରକ୍ତ ହେଲେ ବିଶ୍ୱଜିତ ॥
କହିଲେ ତତେ ଦେବି ଯମେ । କହନ୍ତେ ଏହା ମତିଭ୍ରମେ ॥
ସେ ପୁତ୍ର ଗଲା ଯମପୁର । ରହିଲା ନିର୍ଜୀବ ଶରୀର ॥
ପଡ଼ିଲା ଶବ ଯଜ୍ଞସ୍ଥାନେ । ପୁଣି ତିନି କି ଚାରି ଦିନେ ॥
ବାହୁଡ଼ି ଆସିଲା ନନ୍ଦନ । ହେଲା ସେ ଶବ ସଚେତନ ॥

ପୁତ୍ର ନମିଲା ପିତାପଦେ । ଆନନ୍ଦେ ଭକ୍ତି ଗଦଗଦେ ॥
ସକଳେ ଦେଖି ଆଚମ୍ବିତ । ପିତା ହୋଇଲେ ହରଷିତ ॥
ଦଣ୍ଡବତ୍ ଯେହ୍ନେ ହସ୍ତ ଯୁକ୍ତ । ପାଇଣ ହୁଅଇ ଜଷତ ॥
ପିତା ହୋଇଲେ ଧନ୍ୟ ଧନ୍ୟ । କହିଲେ ମୋର ବହୁ ପୁଣ୍ୟ ॥
କହନ୍ତି ପୁତ୍ରେ ପରଶଂସି । ତୁ ନୋହୁ ବାବୁ ମର୍ତ୍ତ୍ୟବାସୀ ॥
ନବ ଜନମ ଦୈବ ବଳେ । ପାଇଲୁ ନିଜ କର୍ମଫଳେ ॥
କହ ତନୟ ଫେଡ଼ି ମୋରେ । କସ ଦେଖିଲୁ ମୃତ୍ୟୁପୁରେ ॥
କପଟ କର୍ମଫଳ ନରେ । ଭୁଞ୍ଜନ୍ତି ଯାଇ ଯମପୁରେ ॥
ପିତା ବଚନେ ଯୋଡ଼ି କର । ସେ ପୁତ୍ର ଦିଅଇ ଉତ୍ତର ॥
ହେ ପିତା, ଅନ୍ୟ ଋଷିଗଣେ । ଯାହା ମୁଁ ଦେଖିଲି ନୟନେ ॥
ଏଠାରୁ ଯାଇ ଯମପୁର । ଅତି ଆଶ୍ଚର୍ଯ୍ୟ ଚମତ୍କାର ॥
ମତେ ଦେଖିଣ ଜନ୍ତୁବ୍ରାଣ । କଲେ ବହୁତ ସନମାନ ॥
କହିଲି ତାଙ୍କୁ ସବିନୟେ । ସଦୟ ହୁଅ ଯମରାୟେ ॥
ଆସିଛି ତବ ସନ୍ନିଧାନ । ଆଦେଶ ମୋ ଦିଅତ ସ୍ଥାନ ॥
ଯମ କହିଲେ ଯାଅ ଫେରି । ତୁମ୍ଭ ଆୟୁଷ ନାହିଁ ପୂରି ॥
ପିତା ଆଦେଶ ଯମପୁର । ଦେଖିଛ ଏବେ ଯାଅ ଘର ॥
ସେ ଋଷି ଅନଳ ସମାନ । କଲେ ଯା ମୁଖେ ଉଚ୍ଚାରଣ ॥
ଅନ୍ୟଥା ନୁହେ ସେ ବଚନ । ତେଣୁ ଆସିଛ ମୋ ଭବନ ॥
ତୁମ୍ଭଙ୍କୁ ନ ଦେଖି ପିଅର । ଶୋକରେ ଅତ୍ୟନ୍ତ କାତର ॥
ତୁରିତେ ଯାଅ ମର୍ତ୍ତ୍ୟପୁରେ । ପ୍ରଣମି ପିତାଙ୍କ ଛାମୁରେ ॥
ଆପଣ ଅତିଥି ମୋ ଦ୍ୱାରେ । ପୂଜିବ ମୁଁ କି ଉପହାରେ ॥
ଯେ ବର ତୁମ୍ଭ ଇଚ୍ଛା ମାଗ । ଦେବି ମୁଁ ଏବେ ମହାଭାଗ ॥
ଯମର ଶୁଣି ଏ ଉକତି । କହିଲି ଦେବ ଜନ୍ତୁପତି ॥
ପିତୃ ଆଦେଶେ ଏତେ ଦୂରେ । ଆସିଛି ମୁହିଁ ତବ ପୁରେ ॥
ଏଠାକୁ ଆସି କେହି ପ୍ରାଣୀ । ନ ଫେରେ ମର୍ତ୍ତ୍ୟପୁରେ ପୁଣି ॥
ଯହିଁ ସୁକୃତବନ୍ତ ନରେ । ବସନ୍ତି ଆସିଣ ଏ ପୁରେ ॥

ସୁକୃତ ଫଳେ ଯେ ଯେ ଲୋକେ । ବସନ୍ତି ନିଶ୍ଚିନ୍ତେ ବିଶୋକେ ॥
ସେସବୁ ମୋତେ ଦୟା କରି । ଦେଖାଅ ଯମ ଦଣ୍ଡଧାରୀ ॥
ତହୁଁ ସେ ଯମ ଭକ୍ତିଯାନେ । ବସାଇ ମତେ ନାନାସ୍ଥାନେ ॥
ଦେଖାଇ ବୁଲାଇଲେ ପୁର । ଅତି ଅଦ୍ଭୁତ ମନୋହର ॥
ସୁଦିବ୍ୟ ବହୁ ନିକେତନ । ଅତି ବିଚିତ୍ର ସୁଗଠନ ॥
ଶୋଭିତ ଅଶେଷ ରତନେ । ଖଚିତ ଅପୂର୍ବ ଯତନେ ॥
ଶୁଭ୍ର ଶରତ ଚନ୍ଦ୍ର ସମ । ରୂପ ଗାମ୍ଭୀର୍ଯ୍ୟ ମନୋରମ ॥
ଅଷ୍ଟ ପଦ୍ମ ଉଚ୍ଚ ପୁର । ବିରାଜେ କିଙ୍କିଣୀ ନୂପୁର ॥
ଅଟ୍ଟାଳି ଉପରେ ଅଟ୍ଟାଳି । ଉଠିଛି ଊର୍ଦ୍ଧ୍ୱେ ନୁହେଁ କଳି ॥
ପୁର ମଧ୍ୟରେ ଶୋଭାବନ । ସରିତ ଶୀତଳ କାନନ ॥
ବହଇ ସୁନିର୍ମଳ ନୀର । ବିରାଜେ କାହିଁ ସରୋବର ॥
ସୁବର୍ଣ୍ଣ ରଜତେ ଜଡ଼ିତ । ଶୋଭେ ତୋରଣ ଶତ ଶତ ॥
ସେ ପୁରର ଯେତେ ବସ୍ତୁଚୟ । ରତ୍ନେ ଉଜ୍ଜ୍ୱଳ ପ୍ରଭାମୟ ॥
ବାଳାର୍କ କନକ ବରଣେ । ରଞ୍ଜିତ ଦିଗନ୍ତ ଯେସନେ ॥
ଧଷ୍ଟ୍ର କୋମଳ ସୁବସନ । ମଣ୍ଡିଛି ବିବିଧ ଆସନ ॥
ବିବିଧ ରସ ଭକ୍ଷ ଭୋଜେ । ଶଇଳ ଶିଖର ବିରାଜେ ॥
ଲତା ପାଦପେ ପାଏ ଶୋଭା । ରସାଳ ଫଳ ମନୋଲୋଭା ॥
ସୁଗନ୍ଧ ସୁନ୍ଦର ସୁମନ । ଫୁଟଇ ନିତ ଅଗଣନ ॥
ବହଇ ଦୁଗ୍ଧ ଦଧି ଧାର । କେ ସଂଖ୍ୟା କରିବ ତାହାର ॥
ପଥେ ଗୁଲଇ ନାନା ଯାନ । ସୁନ୍ଦର ସ୍ୟନ୍ଦନ ବିମାନ ॥
ସୁରଭି ଶୀତଳ ସମୀର । ବହେ ସେ ପୁରେ ନିରନ୍ତର ॥
ନ ଲାଗେ ତହିଁ ଦେହେ କ୍ଳାନ୍ତ । ପ୍ରକାଶେ ଆରାମ ସୁଶାନ୍ତ ॥
ଦେଖି ସେ ପୁର ଅଦଭୁତ । ହେଲି ମୁଁ ମନେ କୃତକୃତ୍ୟ ॥
ପୁଚ୍ଛିଲି ତହୁଁ ଯମଦେବେ । ହେ ପ୍ରଭୁ ମୋତେ କହ ଏବେ ॥
ପୁଚ୍ଛିଲି ତହୁଁ ଯମଦେବେ । ହେ ପ୍ରଭୁ ମୋତେ କହ ଏବେ ॥
ଏ ଯେତେ ସରିତ ନିର୍ଝର । ବହଇ ଯହିଁ ନିରନ୍ତର ॥

ମଧୁର ଦୁଗ୍‌ଧ ଦଧିଧାର । ପାୟସ୍ତୁ ବିବିଧ ପ୍ରକାର ॥
ଗିରି ସମ ଏ ପୁରପନ୍ତ । ପୁରଛନ୍ତି ଯହିଁ ସୁଖ ଶାନ୍ତ ॥
ଏ ସବୁ କାହା ଉପଭୋଗେ । ସର୍ଜିତ ଏଥେ ଉପଯୋଗେ ॥
ଯମ କହିଲେ ପୁଣ୍ୟଫଳେ । ଭୋଗନ୍ତି ପ୍ରାଣୀ ଏ ସକଳେ ॥
ଗୋ-ସେବା କରଇ ଯେ ନିତି । ଗୋ-ଦାନ କରେ କରି ପ୍ରୀତି ॥
କି ଅବା ଉପଯୁକ୍ତ ଜନେ । ତୋଷଇ ଗୋରସ ଭୋଜନେ ॥
ମୋ ପୁରେ ଆସିଲେ ସେ ନର । କରେ ଏ ସର୍ବ ଅଧିକାର ॥
ବହୁ ସହସ୍ର ବର୍ଷ ଯାଏ । ଫଳଭୋଗେ ଏ ପୁରେ ସେ ରହେ ॥
ଗୋ-ସେବା ଗୋ-ଦାନ ସମାନ । ପୁଣ୍ୟ ସୁକୃତ ନାହିଁ ଆନ ॥
କଉଁକ ଗୋ-ଦାନେ କି ଫଳ । ସେ ପୁଣି କହିଲେ ସକଳ ॥
ଗୋ-ଦାନ ମାହାତ୍ମ୍ୟ ବିସ୍ତାର । କହିଲେ ଯମ ଦଣ୍ଡଧାରୀ ॥
ଦେଖିସାରି ସେ ଦିବ୍ୟ ପୁର । ନ ଗଲି ମୁଁ ଅଧିକ ଦୂର ॥
ଯମଙ୍କ ଠାରୁଁ ପାଇ ଜ୍ଞାନ । ଆସିଲି ତବ ସନ୍ନିଧାନ ॥
ସେ ଋଷି ଶୁଣି ଏ ସମ୍ବାଦ । ପୁତ୍ରକୁ ଦେଲେ ଧନ୍ୟବାଦ ॥
କଲେ ବହୁତ ଧେନୁଦାନ । ଅନ୍ତେ ଲଭିଲେ ଏହି ସ୍ଥାନ ॥

## ଗୁରୁ ଉବାଚ

ଭୀଷ୍ମଙ୍କ ଠାରୁଁ ଏ ଆଖ୍ୟାନ । ଶୁଣି ସେ ପାଣ୍ଡବ ପ୍ରଧାନ ॥
ହୋଇଲେ ହୃଷ୍ଟ ପୁଲକିତ । ଗୋ ଦାନେ ବଳାଇଲେ ଚିତ୍ତ ॥
ହେ ବ୍ରହ୍ମଋଷି ସତ୍ୟବ୍ରତ । ପରମ ଏ ପୁଣ୍ୟ ଚରିତ ॥
ଶୁଣନ୍ତୁ ବିଶ୍ୱବାସୀ ଜନ । କରନ୍ତୁ ସଦା ଗୋ ପାଳନ ॥
ଦିଅନ୍ତୁ ସାଦରେ ଗୋ-ଦାନ । ଗୋପର ଏହି ନିବେଦନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନକେ ପର୍ବଣି
ପିତୃ ସମୀପେ ନଚିକେତା ଗୋ-ପ୍ରଦାନ ପ୍ରତ୍ୟକ୍ଷ ଫଳ
ବର୍ଣ୍ଣନେ ନାମ ଦଶମୋଽଧ୍ୟାୟଃ



# ଏକାଦଶ ଅଧ୍ୟାୟ

ସେ ଯୁଧିଷ୍ଠିର ଧର୍ମସୁତ । ହୋଇଲେ ଅତି ହରଷିତ ॥
ଭୀଷ୍ମଙ୍କୁ କରି ନମସ୍କାର । କହନ୍ତି ବଚନ ମଧୁର ॥

## ଯୁଧିଷ୍ଠିର ଉବାଚ

ଋଷିକୁମାରେ ଯମବାଣୀ । କୃତାର୍ଥ ହୋଇଲି ମୁଁ ଶୁଣି ॥
ଅଜ୍ଞାତ ଅବୋଧ ଲାଗି । ନୃଗ ହୋଇଲେ ଦୁଃଖଭାଗୀ ॥
କିନ୍ତୁ ମୋ ମନେ ପିତାମହ । ତଥାପି ରହୁଛି ସନ୍ଦେହ ॥
ଗୋଲୋକ ପ୍ରତି ମୋ ସଂଶୟ । ତୁଟାଅ ହୃଦ୍‌ ମହାଶୟ ॥
ଗୋ-ଦାନ ପୁଣ୍ୟ ଫଳେ ନର । ବସନ୍ତି ଯହିଁ ନିରନ୍ତର ॥
ସେ ଲୋକ ତତ୍ତ୍ୱ ସବିସ୍ତର । କହ ହେ କୁରୁ ଧନୁର୍ଦ୍ଧର ॥

## ଭୀଷ୍ମ ଉବାଚ

ଶୁଣ ହେ ପୂର୍ବ ଇତିହାସ । ଯେଣେ ତୁଟିବ ଅବିଶ୍ୱାସ ॥
ବ୍ରହ୍ମାଙ୍କୁ ଇନ୍ଦ୍ର ଯେ ବୃତ୍ତାନ୍ତ । ପୃଚ୍ଛିଲେ, କହେଁ ଶୁଣ ତାତ ॥

## ଇନ୍ଦ୍ର ଉବାଚ

ହେ ବ୍ରହ୍ମାଲୋକ ପିତାମହ । ମନେ ମୋ ଲାଗଇ ସନ୍ଦେହ ॥
ଦେଖେଁ ମୁଁ ଗୋଲୋକନିବାସୀ । ନନ୍ଦନ ସ୍ୱର୍ଗ ସୁଖରାଶି ॥
ଯାଆନ୍ତି ସ୍ୱର୍ଗଲୋକ ପରେ । ତେଣୁ ସଂଶୟ ମୋ ମନରେ ॥
କାହିଁ ଗୋଲୋକ କି ଆକାର । ଗୋ-ଦାନେ ଯହିଁ ଯାଏ ନର ॥
କି ଗୁଣ କି ଲକ୍ଷଣ ତାର । ମିଳେ ବା ଫଳ କି ପ୍ରକାର ॥

ଗୋ-ମାହାତ୍ମ୍ୟ

ଜଗତର ସେ ଲୋକ ପ୍ରାପତି | ତହିଁ ବା କି ପରମ ଗତି ||
ଏ ସର୍ବ ତତ୍ତ୍ୱ ଭଗବାନ | କେ ଜାଣଇ ତୁମ୍ଭ ବିହୁଁ ଆନ ||
କର ମୋଠାରେ ଅନୁଗ୍ରହ | ସନ୍ଦେହ ସର୍ବ ଛେଦ୍ୟ କର ||

## ବ୍ରହ୍ମା ଉବାଚ

ହେ ଇନ୍ଦ୍ର ତୁମ୍ଭେ ବଡ଼ ଧନ୍ୟ | କିଏ ବା ତୁମ୍ଭ ବିନା ଅନ୍ୟ ||
ପୃଚ୍ଛିବ ଗୋଲୋକ ସମ୍ବାଦ | ତୁମ୍ଭଙ୍କୁ ଶତ ଧନ୍ୟବାଦ ||
ଅଛି ହେ ଇନ୍ଦ୍ର ବହୁ ଲୋକ | ଯହିଁ ନ ଲାଗେ ଦୁଃଖଶୋକ ||
ସେସବୁ ତୁମ୍ଭଙ୍କୁ ଅଜଣା | ଯହିଁ ଅମଳ ଦେବେ ବଣା ||
ସେସବୁ ଗୋଚର ମୋହର | ଆବର ଚକ୍ରଚା ନାଗ ||
ନ ଜାଣେ ମନ୍ତହିଁ ସେ ଆନ | ସେ ଜାଣେ ସେ ଲୋକ ସନ୍ଧାନ ||
ଯହିଁ ସୁବ୍ରତ ଋଷିଗଣ | କରନ୍ତି ସ୍ୱଚ୍ଛନ୍ଦେ ଗମନ ||
ନିର୍ମଳ ମନେ ଯୋଗ ସାଧି | ଯୋଗିଏ ଧରନ୍ତି ସମାଧି ||
ଯାନ୍ତି ସେ ଲୋକେ ତେଜି ଅଙ୍ଗ | ଶୁଣ ହେ ସେ ଲୋକ ପ୍ରସଙ୍ଗ ||
କାଳର ତହିଁ ନାହିଁ ଗତି | ପ୍ରକାଶେ ନାହିଁ ଅଗ୍ନିଜ୍ୟୋତି ||
ନାହିଁ ଜରାର ଆକ୍ରମଣ | ନାହିଁ କହୁନ୍ହିଁ ଅକଲ୍ୟାଣ ||
କି ଅବା ଆଧିବ୍ୟାଧି ଦୋଷ | ନ ଲାଗେ ଯହିଁ ଶ୍ରମକ୍ଲେଶ ||
ଯେ ଯାହା ବାଞ୍ଛେ ହୃଦଗତେ | ସେ ତାହା ଲଭଇ ତୁରିତେ ||
ପରମ ଗୋଲୋକ ନିବାସୀ | ଭୁଞ୍ଜନ୍ତି ସର୍ବ ସୁଖରାଶି ||
କରନ୍ତି ସ୍ୱଚ୍ଛନ୍ଦେ ବିହାର | ଭୋଗନ୍ତି ଐଶ୍ୱର୍ଯ୍ୟ ଅପାର ||
ଶୋଭଇ ତହିଁ ସରୋବର | ସରିତ ବାପି ମନୋହର ||
ବିବିଧ ବନ ପଲ୍ଲବିତ | ଶୃଙ୍ଗ ପର୍ବତ ଅଗଣିତ ||
ମନୋଜ୍ଞ ଦ୍ରବ୍ୟ ଯେତେ ଯହିଁ | ସକଳ ପୂରିଅଛି ତହିଁ ||
ଏପରି ବିପୁଳ ବିଭବ | ଅପର ଲୋକେ ଅସମ୍ଭବ ||
ଗୁରୁବତ୍ସଳ ଶାନ୍ତ ଦାନ୍ତ | ଯେ ଅହଂକାର ବିରହିତ ||

